# ଅକ୍‌କଲ୍‌ଗୁମ୍

ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ

ଜଣେ ଲୋକ ଥିଲା । ତାହାର ବାପଟି ଅଶୀ ବର୍ଷର ବୁଢ଼ା । ପୁଅ ବୋହୂ ଉଭୟେ ବୁଢ଼ାର କୌଣସି ଯତ୍ନ ନଅନ୍ତି ନାହିଁ । ଏପରି କି ବଗଡ଼ କୁକୁରଠାରୁ ଆହୁରି ଅଧିକ ହୀନମାନ କରନ୍ତି । ଗୋଟାଏ ଅନ୍ଧାରୁଆ ଘରକୋଣରେ ବୁଢ଼ା ପଡ଼ିଥାଏ । ସମସ୍ତେ ଖାଇସାରିଲା ପରେ ବୋହୂ କଂସାଏ ଠମକା ତୋରାଣି ନେଇ ବୁଢ଼ାକୁ କହେ, "ଆରେ ଗାତପଶା ବୁଢ଼ା ! ତୋ' ପଥୁରି ଦେଖା, ଏତେ ଲୋକ ମରୁଛନ୍ତି, ତତେ ମରଣ ହେଉନାହିଁ । ଆମକୁ ଖାଲି ସନ୍ତୁଳିବାକୁ ବଞ୍ଚିଛୁ ?

ବୁଢ଼ା କୋଠରୀରେ ବହୁଦିନର ଖଣ୍ଡିଏ ଦଦରା ନଳିତିରିଶ ପଥୁରି ଥାଏ । ବୁଢ଼ା ସେହି ପଥୁରି ଖଣ୍ଡି ଦେଖାଏ । ଗୁଣବନ୍ତୀ ବୋହୂ ତୋରାଣିତକ ଓଜାଡ଼ି ଦେଇ ଚାଲିଯାଏ । ଦିନକର ଦୈବାତ୍ ବୁଢ଼ାର ଗୋଡ଼ ବାଜି ପଥୁରିଟି ଭାଙ୍ଗିଗଲା । ଏହା ଦେଖି ବୋହୂ କ ଆଉ ସମ୍ଭାଳ ହୁଏ । ଭଲ ଦିନରେ ତ ବୁଢ଼ା ସମ୍ଭାଳ ପଡ଼ୁନାହିଁ—ଆଜିତ ପୁଣି ପଥୁରି ଭାଙ୍ଗିଛି—ବୁଢ଼ାକୁ ମାରେ କି ନ ମାରେ । ବୁଢ଼ା ପୁଅ ସେତେବେଳେ ଗାଁ ଭିତରକୁ ବୁଲି ଯାଇଥିଲା—ପାଟି ଶୁଣି ଦୌଡ଼ି ଆସିଲା । ବୋହୂ ବନେଇ ଚୂନେଇ ବୁଢ଼ାର ଗୁରୁତର ଅପରାଧ କଥା ସ୍ୱାମୀ ଆଗରେ ଗାଇଗଲା । ପୁଅ ତ ବୋହୂକୁ ବଳି ଚାରିପଣ ଅଧିକା । ଏପରି ଅବସ୍ଥାରେ ବୁଢ଼ା ପୁଅଠାରୁ ଯେଉଁ ସଦ୍‌ବ୍ୟବହାର ପାଇଥିବ, ତାହା ଆଉ କାହାରିକୁ କହିବାକୁ ହେବନାହିଁ ।

ବୁଢ଼ାର ଗୋଟିଏ ଶ୍ରେଷ୍ଠ ନାତି ଥାଏ ତା ନାଆଁ ବୁଦ୍ଧିଆ । ସେ ବୁଢ଼ାବାପାର ଏପରି ଦୁର୍ଦ୍ଦଶା ଦେଖି କାହାକୁ କିଛି ନ କହି ସବୁବେଳେ ମନଦୁଃଖରେ ଥାଏ; ମାତ୍ର ଆଜି ଏହି ପଥୁରି ଭଙ୍ଗା ଖବର ଶୁଣି ଏବଂ ବୁଢ଼ା ଉପରେ ବାପ ମା'ଙ୍କର ରାଗ ଦେଖି ସେ ମଧ୍ୟ ଭୟଙ୍କର ରାଗିଯାଇ ବୁଢ଼ାକୁ ମାରିବାକୁ ଦୌଡ଼ିଗଲା । ଏଣେ ବାପ, ମା' ପୁଅକୁ ବହୁତ ପ୍ରଶଂସା କରି ତା' ସଙ୍ଗରେ ଗଲେ । ବୁଦ୍ଧିଆ ବୁଢ଼ା ବାପ ନିକଟରେ ପହଞ୍ଚି ଗାଳି ଦେଇ କହିଲା, "ଆରେ ଅନ୍ଧବୁଢ଼ା, ତୋର ଆଖିକୁ କଣ ଦିଶିଲା ନାହିଁ ? ତୁ ଆମର ବହୁଦିନର ପୁରୁଣା ପଥୁରିଟିକୁ ଭାଙ୍ଗି ଦେଇ ସର୍ବନାଶ କଲୁ । ମୁଁ ଏବେ କରେ କଣ ? ମୋ ବାପ ମା' ବୁଢ଼ା ହେଲେ ମୁଁ ତାଙ୍କୁ କେଉଁଥିରେ ଖାଇବାକୁ ଦେବି ? ତୁ ଏତିକି ଭାବିଲୁ ନାହିଁ ?

ପୁଅର କଥା ଶୁଣି ଏବେ ବାପ ମା'ଙ୍କର ଅକ୍‌ଲ୍‌ଗୁମ୍ । ସେହି ମୁହୂର୍ତ୍ତରୁ ପୁଅ ବୋହୂ ନିଜ ନିଜର ତ୍ରୁଟି ବୁଝିପାରିଲେ ଏବଂ ସେହି ଦିନଠାରୁ ସମସ୍ତେ ବୁଢ଼ାକୁ ଯତ୍ନରେ ରଖିଲେ ।

"ମୋ କଥାଟି ଏତିକି, ଫୁଲ ଫୁଟିଗଲା କେତକୀ" ।



# ଫୁଲକଢ଼ ଓ ବାବୁଲ

## ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ବୋଉ ଡାକ ଦେଲେ । ବିଛଣାରୁ ଉଠି ବସିପଡ଼ିଲା ବାବୁଲ । ତା ମନ ଭରି ଖୁସି, ଖୁଉବ୍ ହାଲୁକା ।

ମନରେ ଖେଳିଗଲା ମାମୁଁଙ୍କ କଥା । ସେ ଦିନ ମାମୁଁ କହିଥିଲେ ଯେ, "ସକାଳେ ସପନ ଦେଖିଲେ ତାହା ସତ୍ୟ ହୁଏ ।" ତା ହେଲେ ଫୁଲ କଢ଼ି କଥା ସତ ହେବ । ସେ ଗୁଡ଼ାଏ ଫୁଲ ତୋଳି ଆଣିବ । ତାକୁ ମାଳ ଗୁନ୍ଥିବ । କେହି ଦେଖିବେ ନାହିଁ । କେହି ଜାଣିବେ ନାହିଁ । ଚୁପ୍ ଚୁପ୍ ହୋଇ ଯିବ । ଜେଜେଙ୍କ ବେକରେ ଲମ୍ବାଇ ଦେବ । ଜେଜେଙ୍କ ଜନ୍ମ ଦିନରେ ତାହା ହେବ ବାବୁଲର ଉପହାର ।

ସେ ମୁହଁ ଟେକି ଚାହିଁଲା —ରୋଷାଇଘରୁ ବୋଉଙ୍କ ପାଟି ଶୁଭୁଛି । ବୋଧହୁଏ ବହୁତ ପିଠା ହୋଇଛି—ବହୁ ପ୍ରକାର ବି ହେଉଛି । ଘିଅଛଣା ବାସନା ତାକୁ ଭଲ ଲାଗିଲା । ସେଁ ସାଁ ଶବ୍ଦ ବି ହେଉଛି ।

ଜେଜେଙ୍କ ଜନ୍ମ ଦିନ ପାଇଁ ବୋଉ ପିଠା କରିବାରେ ବ୍ୟସ୍ତ । ବର୍ତ୍ତମାନ ତାକୁ ଆଉ ଖୋଜିବେ ନାହିଁ । ସେ ନିଶ୍ଚିନ୍ତ ।

ବାବୁଲ ଚାଲିଲା ପଦାକୁ—ବଗିଚା ଭିତରକୁ । ଘରପାଖରେ ଗଛ ଡାଳ ପବନରେ ଦୋହଲୁଛି । ସତେ ଯେପରି ସେମାନେ ଦୋଳି ଖେଳୁଛନ୍ତି । ପତର ଗୁଡ଼ିକ ହଲି ଯାଉଛନ୍ତି । ଏ ତା ଉପରେ ଓ ସେ ଏ ଉପରେ ପିଟି ହେଉଛନ୍ତି । ଅତି ଖୁସି ହେଲେ ତା ସାଙ୍ଗ ପିଲାଏ ଯେପରି ହୁଅନ୍ତି ।

କେତେ ପ୍ରକାର ଫୁଲ ଫୁଟୁଥାନ୍ତି । ନାଳି, ହଳଦିଆ, ଧଳା, ଓ ଛଇ ଛଇଳିଆ । ଫୁଲ ଯେତିକି, ତା ଠାରୁ ବହୁତ ବେଶି କଢ଼ି । କଢ଼ି ଗୁଡ଼ିକ, ବକୁଲି ପରି ଲାଜକୁଳା । ପବନରେ ବେଶୀ ମୁଣ୍ଡ ହଲାଉ ନାହାନ୍ତି । ଖାଲି ଟିକିଏ ଥରି ଯାଉଛନ୍ତି । ଫୁଲ ମାନଙ୍କ ଭଳି ଏ ପାଖ ସେ ପାଖ ହେବାକୁ ଲାଜ କରୁଛନ୍ତି ବୋଧହୁଏ ।

ବାବୁଲି ଆଗ ଚାଲିଗଲା ତାର ଅତି ପ୍ରିୟ ସୁଗନ୍ଧରାଜ ଗଛ ପାଖକୁ । ଦେଖିଲା, ସପନ କଥା ସତ । ସେଥିରେ ଅଳ୍ପ ଫୁଲ ଫୁଟିଛି । କଢ଼ି ବହୁତ ବେଶି । ଦୁଇ ତିନୋଟି କଢ଼ିକୁ ସେ ହାତରେ ଆଉଁସି ଦେଲା । ମନେ ମନେ କହିଲା ବୋଧହୁଏ, ବନ୍ଧୁ, ତୁମ କଥା ମୁଁ ବରାବର ମାନିବି । କଢ଼ି ଜମା ଛିଡ଼ାଇବି ନାହିଁ । କେବଳ କେତୋଟି ଫୁଲ ତୋଳି ନେବି ଜେଜେଙ୍କ ପାଇଁ ।

ବାବୁଲି ଅତି ଯତ୍ନରେ ବାଛି ବାଛି ଫୁଲ ତୋଳିଲା । ଅନ୍ୟ ଗଛ ପାଖକୁ ଚାଲିଯାଇ ମଲ୍ଲି ବୁଦା ଦେଖି କୁରୁଳି ଉଠିଲା । ବାପରେ ଏତେ ଫୁଲ ! ସେଥିରୁ ଗୁଡ଼ିଏ ତୋଳିଲା । ଡାଲି ତ ପୂରିଗଲାଣି । ଆଉ ଫୁଲ ତୋଳିବ କାହିଁକି ? ତାକୁ ଗୁନ୍ଥିବ କେତେବେଳେ ?

ତଥାପି ଆଉ କେତେକ ଫୁଲ ପାଇଁ ମନ ହେଉଥିଲା; ମାତ୍ର ଆଣିଲା ନାହିଁ । ଘର ଭିତରେ ବସି ସେହି ଫୁଲକୁ ମାଳ କଲା । ଅତି ସୁନ୍ଦର ମାଳଟିଏ ।

ବୋଉ ଆଗ ଘରୁ ଡାକଦେଲେ । ବାବୁଲା, ଖାଇବୁ ଆ !

ମୁହଁ ଟେକି ସେ ଉତ୍ତର ଦେଲା—ମୁଁ ଜେଜେଙ୍କ ସାଙ୍ଗରେ ଖାଇବି ।

ଜେଜେ ଖାଇ ବସିଛନ୍ତି, ତୋତେ ଡାକୁଛନ୍ତି ପରା । ବୋଉଙ୍କ ପାଟି ଶୁଣାଗଲା । ବାବୁଲା ଫୁଲ ମାଳଟି କାଗଜରେ ଗୁଡ଼ାଇ ଧରିଲା । ତରତର ହୋଇ ଜେଜେଙ୍କ ଘରକୁ ଚାଲିଗଲା । ଏକା ଜେଜେ ନୁହଁନ୍ତି, ସାଇର ଆଉ କେତେକ ବୁଢ଼ା—ଜେଜେଙ୍କ ସାଙ୍ଗସାଥୀ ବସିଛନ୍ତି । କେତେ କଅଣ ଗପ ଚାଲିଛି ।

ବାବୁଲା ଫୁଲ ମ କଟି ଜେଜେଙ୍କ ବେକରେ ଲମ୍ବାଇ ଦେଲା । ଠିକ୍ ଜେଜେଙ୍କ ମୁଣ୍ଡବାଳ ପରି ଧଳା ଫୁଲ ଗୁଡ଼ିକ । ସେ କରି କରି ହୋଇ ହସି ଉଠିଲା ।

ଜେଜେ ତାକୁ କୋଳକୁ ଟାଣି ନେଲେ । କେତେ ଆଦର କଲେ । ଗେଲ କଲେ । ପାଖରେ ବସିଥିବା ଲୋକେ ବି ଖୁସି !

ବୋଉ ପିଠା ଥାଳ ଆଣି ଗୋଟି ଗୋଟି କରି ସମସ୍ତଙ୍କ ପାଖରେ ଥୋଇଦେଲେ । ବାବୁଲା ଆଶ୍ଚର୍ଯ୍ୟ ହୋଇଗଲା । କଅଣ ଏ ସମସ୍ତେ ଖାଇବେ ?

ଜେଜେ ତା ମନ ଭାବନା ବୁଝି ପାରିଲେ ବୋଧହୁଏ । ତାକୁ ଟିକିଏ ଗେଲ କରି ଦେଇ କହିଲେ—ଭଲ ଜିନିଷଟିଏ ମିଳିଲେ ଏକା କେବେ ଖାଇବ ନାହିଁ । ସାଙ୍ଗସାଥୀ, ବନ୍ଧୁବାନ୍ଧବ ସମସ୍ତଙ୍କୁ ଖୁଆଇବ । ନିଜେ ଖାଇଦେଲେ, ତା ସୁଆଦ ନିଜେ ଜାଣିବ ସିନା, ଆଉ ତ କେହି ଜାଣି ପାରିବେ ନାହିଁ । ସମସ୍ତେ ଖାଇଲେ, ତା ସ୍ୱାଦ ବୁଝିବେ । ପ୍ରଶଂସା କରିବେ । ସେତେବେଳେ ମନ ଭାରି ଖୁସି ହେବ । ଏକାକୀ ଖାଇଲେ ଏତେ ଆନନ୍ଦ କେବେ ମିଳିବ ନାହିଁ ।

ପାଟିରୁ କଥା ସରିନାହିଁ; ବାବୁଲା କହି ପକାଇଲା, ତା ହେଲେ ମୋ ସାଙ୍ଗଙ୍କୁ ଡାକି ଆଣେ । ଏକାଠି ଖାଇବେ ।

ଜେଜେ ତାଙ୍କ ପାକୁଆ ପାଟିରେ ହସି ପକାଇଲେ । ବାବୁଲାର ଖେଳ ସାଥୀ ରେଣୁ, ମୀନା, ବାବାଜୀ, ଏମିତି ବହୁତ ପିଲା ଆସିଗଲେ । ବୋଉ ସମସ୍ତଙ୍କ ପାଇଁ ଆଣି ପିଠା ଥାଳିଆ ଥୋଇଲେ । ଅତି ବୁଢ଼ା, ପୁଣି ଅତି ପିଲା—ସମସ୍ତେ ଖୁସିରେ ଖାଇଲେ । ବାବୁଲା ଦେଖିଲା, ସେତେବେଳେ ସମସ୍ତଙ୍କ ମୁହଁରେ ଆନନ୍ଦର ତେଜ ଖେଳିଯାଇଛି । ସମସ୍ତେ ପିଠା, ଖିରି, ତରକାରିର ପ୍ରଶଂସା କରୁଛନ୍ତି ।

ବାବୁଲା ସେତେବେଳେ ଭାବୁଥାଏ, ଏ ପିଠା ଜେଜେ କି ମୁଁ ଖାଇଥିଲେ, ବୋଉଙ୍କୁ କେବଳ ଦୁଇଟି ପ୍ରଶଂସା ମିଳିଥାନ୍ତା । ସବୁ ଦିନ ତ

ଜେଜେ ବୋଉଙ୍କ ରାନ୍ଧଣାର ପ୍ରଶଂସା କରନ୍ତି । ଆଉ ନୂଆ କଥାଟାଏ ବା କଅଣ ହୋଇ ଥାଆନ୍ତା ? ଆଜି ବହୁତ ଲୋକ ଖାଇଲେ, ଖୁସି ହେଲେ । ବୋଉଙ୍କୁ ପ୍ରଶଂସା କଲେ । ଏଥିରେ ବୋଉଙ୍କର କଅଣ ବେଶି ଲାଭ ହେଲା ନାହିଁ ? ସେ ବୋଉ ତାଙ୍କର ଲାଭ ହେଲେ ମୋର ଲାଭ ।

ସପନ କଥା ତା ମନରେ ଖେଳିଗଲା । ସେ ଭାବି ଠିକ୍ କଲା, ଖାଇ ସାରି ଥରେ ବଗିଚାକୁ ବୁଲିଯିବ । ଫୁଲ କଢ଼ିକୁ ସବୁ କଥା ଜଣାଇ ଦେଇ । ଫୁଲ କଢ଼ି ସିନା ସାଙ୍ଗେ ସାଙ୍ଗେ କିଛି କହି ପାରିବ ନାହିଁ—ରାତିରେ ଆସି ସପନରେ କହିଦେବ ଯେ ।

ସେ ହସି ହସି ଜେଜେଙ୍କ ମୁହଁକୁ ଚାହିଁ କହିଲା, ଜେଜେ, ତୁମର ନାଇତି ଏଇ ଜନ୍ମ ଦିନ ହୁଅନ୍ତା କି, ବୋଉ ପିଠାପଣା କରନ୍ତେ । ସମସ୍ତେ ଆସି ଖାଆନ୍ତେ ।

ଆନନ୍ଦରେ କୁରୁଳି ଉଠି ଜେଜେ ତା କଅଁଳ ଗାଲ ଦୁଇଟିକୁ ଚିପି ଦେଲେ ।



# ଗୋଟିକ ପରେ ଗୋଟିଏ

## ରାମକୃଷ୍ଣ ନନ୍ଦ

ରାଜୀବ ଓ ମୀରା ଭାଇଭଉଣୀ । ସେମାନଙ୍କର ବାପା ମାଧବ ବାବୁ ସେ ଦୁହିଁଙ୍କୁ ଡାକି କହିଲେ—"ତୁମ୍ଭେମାନେ ମହାତ୍ମା ଗାନ୍ଧିଙ୍କ ଉପଦେଶ ପଢ଼ିଛ ? ପାଠପଢ଼ା ସଙ୍ଗରେ କିଛିକିଛି କାମ ତୁମକୁ କରିବାକୁ ହେବ । ଜର୍ମାନୀ, ଆମେରିକା ପ୍ରଭୃତି ଦେଶରେ ଛାତ୍ରମାନେ କିଏ ଖବର-କାଗଜ ବିକି, କିଏ ଯାତ୍ରୀମାନଙ୍କ ଜିନିଷ ବୋହି, କିଏ ବା ହୋଟେଲରେ ବସି କାମକରି ଛୁଟି ସମୟ କାଟନ୍ତି । ମୁଁ ଚାହେଁ ତୁମ୍ଭେମାନେ କିଛି କିଛି ଘର କାମ ଆଜିଠାରୁ କରିବ । ମୀରା ମାଆଙ୍କୁ ଘର କାମରେ ସାହାଯ୍ୟ କରିବ । ଦାଣ୍ଡଘର ଓ ତୁମ ପଢ଼ାଘର—ଏ ଦୁଇଟି ଘର ସଫା ରଖିବା ତାର କାମ । ଆଜି ତୋର କ'ଣ କାମ ଜାଣୁ ରାଜୀବ ?

ରାଜୀବ ପଚାରିଲା, "କଅଣ ?"

"ବଗିଚାରେ ଯେଉଁ ଛଅଟି କଲମି ଗଛ ନୂଆ ଲାଗିଛି, ସେଥିରେ ପ୍ରତିଦିନ ଅଧ ବାଲ୍‌ଟିଏ ଲେଖାଏଁ ପାଣି ଦେବୁ । ତିନି ବାଲ୍‌ଟି ପାଣି ହେଲେ ଯଥେଷ୍ଟ । କୂଅରୁ ତିନି ବାଲ୍‌ଟି ପାଣି କାଢ଼ିବା ତୋ ପକ୍ଷରେ କିଛି ବଡ଼ କାମ ନୁହେଁ ।

ଏହା କହି ମାଧବ ବାବୁ ତାଙ୍କ କାମରେ ଚାଲିଗଲେ । ସନ୍ଧ୍ୟା ୫ଟା ବେଳେ ରାଜୀବ ବଗିଚାକୁ ଗଲା ଏବଂ ବାପାଙ୍କ କହିବା ଅନୁସାରେ କଲମି ଗଛରେ ପାଣି ଦେଲା । ପାଣି ଦେଇସାରି କୂଅ ମୂଳ ଚଉତରା ଉପରେ ସେ ଗୋଟାଏ ଦୀର୍ଘ ନିଃଶ୍ୱାସ ଛାଡ଼ି ବସି ପଡ଼ିଲା । ମନକୁ ମନ କହିଲା, "ଓଃ ! ବାପା ଏହାକୁ କୋଉ ହିସାବରେ କହିଲେ ଏ ବଡ଼

କାମ ନୁହେଁ ବୋଲି ? ଦିନକ ପାଇଁ ନ ହୋଇପାରେ, ମାତ୍ର ସବୁଦିନ କଥା ସେ ବୋଧହୁଏ ବିଚାରକୁ ନେଇନାହାନ୍ତି । ଧର, ଦିନକୁ ତିନି ବାଲ୍‌ଟି ପାଣି କାଢ଼ିବ । ତାହାହେଲେ ମାସକୁ ହେଲା ନବେ ଏବଂ ବର୍ଷକୁ ୧୦୮୦ ବାଲ୍‌ଟି । ମୋର ଏହି ଛୋଟ ହାତ ବର୍ଷକୁ କାଢ଼ିବ ହଜାର ବାଲ୍‌ଟିରୁ ଅଧିକ ପାଣି ! ଖାଲି ସେତିକି ନୁହେଁ; କୂଅ ମୂଳରୁ ଗଛ ପାଖକୁ ଯିବା ଆସିବାରେ ପ୍ରତିଦିନ ପ୍ରାୟ ଶହେ ମିଟର ବାଟ ଚାଲିବାକୁ ପଡ଼ିବ । ମାସକୁ ହେଲା ତିନି ହଜାର ଏବଂ ବର୍ଷକୁ ହେଲା ୩୬ ହଜାର ମିଟର ଅର୍ଥାତ୍ ୩୬ କିଲୋମିଟର ।

ନା ଅସମ୍ଭବ ! ବାପା ଆସିଲେ ମୁଁ ତାଙ୍କୁ କହିବି "ଏ କାମ ମୁଁ କରିପାରିବି ନାହିଁ । ଆଉ କିଛି ସହଜ କାମ ମତେ ଦିଅନ୍ତୁ ।"

ମାଧବ ବାବୁ ଘରକୁ ଫେରୁ ଫେରୁ ସନ୍ଧ୍ୟା ହୋଇଗଲା । ସେ ଆସିବା ମାତ୍ରେ ପୁଅ ଝିଅ ଦୁହିଁଙ୍କୁ ତାଙ୍କ କାମ କଥା ପଚାରିଲେ । ମୀରା ତା କାମ କରୁଛି ବୋଲି କହିଲା । ରାଜୀବ କହିଲା, "ମୁଁ ବି ମୋ କାମ କରୁଛି, କିନ୍ତୁ ମୋତେ ଅନ୍ୟ କାମ ଦିଅ । ଏ କାମ ବହୁତ ଭାରି ।"

ମାଧବ ବାବୁ ପୁଅର ପ୍ରକୃତି ଜାଣନ୍ତି । ସେ ପଚାରିଲେ, "ଭାରି ବୋଲି କେମିତି ଜାଣିଲୁ ? କଣ କରିପାରିଲୁ ନାହିଁ ?"

"ଦିନେ ଦିନା କରିଦେଲି । ସବୁଦିନ କଣ କରିପାରିବି ?"

"କାହିଁକି ?"

"ତୁମେ ନିଜେ ହିସାବ କରୁନା ? ଦିନକୁ ତିନି ବାଲ୍‌ଟି ହେଲେ ବର୍ଷକୁ କେତେ ହେଲାଣି ? ପ୍ରାୟ ୧୧୦୦ ବାଲ୍‌ଟି ପାଣି ! ତା ଛଡ଼ା ମୁଁ ହିସାବ କରି ଦେଖିଲି ମତେ ସେ ଗଛରେ ପାଣି ଦେବାକୁ ହେଲେ ବର୍ଷକୁ ୩୬ କିଲୋମିଟର ଚାଲିବାକୁ ହେବ । ଏକଥା କ'ଣ ସହଜ କଥା ?

ମାଧବ ବାବୁ କହିଲେ, "ଓହୋ ! ଏଇଥି ପାଇଁ କହୁଛୁ ଭାରି ବୋଲି ? ତାହାହେଲେ କୋଉ କାମ ସହଜ ବୋଲି ଭାବୁଛୁ ? ତୁ

ଯେମିତି ହିସାବ କଲୁ। ସେମିତି କଲେ ତ କୌଣସି କାମ ସହଜ ଲାଗିବ ନାହିଁ। ଏତ ହିସାବ ଅନୁସାରେ ମୋର କାମ ମଧ୍ୟ କଠିନ। ତାଙ୍କୁ ବର୍ଷକ ଭିତରେ ୭୩୦ଟି ଘର ସଫା କରିବାକୁ ପଡୁଛି। ସେ ଯଦି ଏକା ଥରକେ ଏତକ ଘର ସଫା କଥା ଭାବିବ, ତେବେ ତ ତା ମୁଣ୍ଡ ଘୂରିଯିବ। କୌଣସି ଲୋକ ଏପରି ହିସାବ କରି କାମ କରେ ନାହିଁ। ସେପରି ହେଲେ କୌଣସି କାମ ହୋଇପାରିବ ନାହିଁ।

ଆମେ ଗୋଟିଏ ଦିନର କାମକୁ ହାତକୁ ନେଇ କରୁ। ମନେକର ତୁମ ଗଣିତ ବହିରେ ୧୦୦୦ ଖଣ୍ଡ ଅଙ୍କ ଦିଆଯାଇଛି। ଗୋଟିଏ ବର୍ଷରେ ସେଗୁଡ଼ିକ କଷି ଶେଷ କରିବାକୁ ହେବ। ଛୁଟିଦିନ ଛାଡ଼ି ଦିନକୁ ଯଦି ପାଞ୍ଚଖଣ୍ଡ କରି କଷାଯାଏ, ତେବେ ବର୍ଷ ଶେଷକୁ ତାହା ସରିଯିବ, କିନ୍ତୁ ଆରମ୍ଭରୁ ଯଦି ଜଣେ ପିଲା କହେ, ମୁଁ ହଜାର ଖଣ୍ଡ ଅଙ୍କ କେମିତି କଷିବି ? ତେବେ ସେ କିଛି କରିପାରିବ ନାହିଁ।"

ଏହି ସମୟରେ ରାଜୀବର ମାଆ ସେଠାକୁ ଆସି କହିଲେ, "ପିଲାମାନେ ଏବେ ଖାଇ ନାହାନ୍ତି। କାମ ସରିଲାଣି ଯଦି ଖାଇବ ଆସ।"

ମାଧବ ବାବୁ କହିଲେ —"ରାଜୀବ ତ ଆଜି ଖାଇବ ନାହିଁ।"

"କାହିଁକି ?" ମାଆ ଆଶ୍ଚର୍ଯ୍ୟ ହୋଇ ପଚାରିଲେ।

"ମୁଁ ହିସାବ କରୁଥିଲି, ସେ ଦିନକୁ ପ୍ରାୟ ଦେଢ଼ କିଲୋରୁ ଅଧିକ ଖାଦ୍ୟ ଖାଉଛି। ତେଣୁ ମାସକୁ ପଚିଶ କିଲୋ ଏବଂ ବର୍ଷକୁ ତିନିଶ କୁଇଣ୍ଟାଲ ଖାଦ୍ୟ ତା ପେଟରେ ପଶୁଛି। ଏତେ ଖାଦ୍ୟ ସେ କ'ଣ ଖାଇ ପାରିବ ?"

ମାଆ କିଛି ବୁଝି ନପାରି ଚୁପ୍ ରହିଲେ, ମାନସୀ ହସିଲା ଏବଂ ରାଜୀବ ମଧ୍ୟ ମୁହଁ ପୋତି ହସିଲା। ମାଧବ ବାବୁ ତାଙ୍କ କଥାର ପ୍ରକୃତ ସଙ୍କେତ ସ୍ତ୍ରୀଙ୍କୁ ବୁଝାଇଦେବାରୁ ସେ ମଧ୍ୟ ହସିଲେ।

ତା'ପରେ ମାଧବ ବାବୁ ରାଜୀବକୁ ଲକ୍ଷ୍ୟ କରି କହିଲେ, "ବୁଝିଲୁ ରାଜୀବ, ଈଶ୍ୱରଙ୍କ ନିୟମରେ ଏ ଯେଉଁ ବିରାଟ ସୃଷ୍ଟି ଚାଲିଛି, ସେଠାରେ

କ'ଣ ହେଉଛୁ ଦେଖ୍ । କ୍ଷୁଦ୍ର କୀଟ ପତଙ୍ଗଠାରୁ ଆରମ୍ଭକରି ବୃହଦାକାର ହସ୍ତୀ ପର୍ଯ୍ୟନ୍ତ ସମସ୍ତେ ଗୋଟିକ ପରେ ଗୋଟିଏ କାମ କରି ଚାଲିଛନ୍ତି । ଅଧିକନ୍ତୁ ଓଜନର ମଧୁ ସଂଗ୍ରହ କରିବାଲାଗି ମହୁମାଛିକୁ ଯେତେବାଟ ଉଡ଼ିବାକୁ ପଡ଼େ, ତାହାର ମୋଟ ଦୈର୍ଘ୍ୟ ଅଶୀ ହଜାର କିଲୋମିଟର । ପୃଥିବୀ ପରିଧିର ଦୁଇଗୁଣ ସଙ୍ଗେ ସମାନ । ସେ ଯଦି ତୋ ପରି ହିସାବ କରି ବସନ୍ତା, ତେବେ ତ ତା'ର ହୃଦ୍‌ଯନ୍ତ୍ର କ୍ରିୟା ବନ୍ଦ ହୋଇଯାନ୍ତା ।

ଏଭଳି ନ କରି ବରଂ ପଛକୁ ଚାହିଁ ହିସାବ କରି ଶିଖ । ତା ହେଲେ ତୁ କେତେ କାମ କରିଛୁ, ଜାଣି ପାରିବୁ । ତୋ ଆଗରେ ଦୀର୍ଘ ପଥ ପଡ଼ିଛି ସତ; ମାତ୍ର ପଛକୁ ଚାହିଁଲେ ଜାଣିବୁ ତୁ ତୋର ଚ୍ଛୋଟ ଗୋଡ଼ରେ ଅନେକ ବାଟ ଆସିଲୁଣି । ତାହା ତୋତେ ଆଗେଇବାକୁ ସାହସ ଦେବ । ତୋ' ଗୋଡ଼ରେ ଏତେ ଶକ୍ତି ଥିଲା ଜାଣି ତୁ ଗର୍ବ ଅନୁଭବ କରିବୁ ।

କାନ୍ଥରେ ଏ ଯେଉଁ ନିର୍ଜୀବ ଘଣ୍ଟାଟି ଆମକୁ ଦିନରାତି ସମସ୍ତ କହିଦେଉଛି, ତା ଦୋଳକଟିକୁ ଚାହଁ । ! ତା ବିଷୟରେ ଗୋଟିଏ ମଜା ଗପ ଅଛି । ଥରେ ସେ ତୋ ପରି ହିସାବ କରି ବସିଲା । ସେ ଦେଖିଲା ତାକୁ ଘଣ୍ଟାରେ ୩୬୦୦ଥର, ଦିନକୁ ୮,୪୦୦୦ ଥର ଏବଂ ବର୍ଷରେ ତିନି କୋଟିରୁ ଅଧିକ ଥର ହଲିବାକୁ ପଡ଼ୁଛି । ଏହା ଭାବୁ ଭାବୁ ତା'ର ମୁଣ୍ଡ ବୁଲେଇଗଲା ଏବଂ ସେ ସ୍ଥିର ହୋଇ ରହିଗଲା ।

ଏହି ଗପରୁ ଆମ ସମସ୍ତଙ୍କର କିଛି ଶିଖିବାର ଅଛି । ଆମେ ପ୍ରତିଦିନ ଯେତେ କାମ କରୁଛୁ, ତାକୁ ଏହିପରି ଯଦି ଆଗରୁଗ ହିସାବକରି ବସିବା, ତେବେ ଆମର ମୁଣ୍ଡ ଘୂରେଇ ଯିବ ଏବଂ ଆମେ ଅଚଳ ହୋଇ ରହିଯିବା; କିନ୍ତୁ ଆମେ ପ୍ରକୃତରେ ଦେଖୁଛୁ କଣ ? ନିର୍ଜୀବ ପେଣ୍ଡୁଲମଟି ବର୍ଷକୁ ତିନି କୋଟି ଥର ଦୋହଲି ମଧ୍ୟ ଥକି ପଡୁନାହିଁ । ଆମେ ତେବେ କାମକୁ ଡରି କାହିଁ ବସିପଡ଼ିବା କାହିଁକି ?"

ଏହି ସମୟରେ ମୀରା କହିଲା, ମାଆ କେତେ ବାସନ ଧୋଉଛନ୍ତି !"

ବାପା କହିଲେ ! "ବାସ୍ ବାସ୍ । ସେହି ଦୃଷ୍ଟିରେ ଅନ୍ୟର କାମକୁ ଦେଖ । ତାହାହେଲେ ତୁମର ସାହସ ଆସିବ । ଦିନକୁ ଅନ୍ତତଃ କୋଡ଼ିଏ ଖଣ୍ଡ ହେଲେ ମାସକୁ ଛଅସହ ଏବଂ ବର୍ଷକୁ ୭୨୦୦୦ ଖଣ୍ଡ ବାସନ ତାଙ୍କୁ ଧୋଇବାକୁ ପଡ଼ୁଛି । ଏହିପରି ପୁଣି କେତେ ବର୍ଷ ସେ ଧୋଇଲେଣି ।

ଏକାଧାରକେ ଦେଖିଲେ ସବୁ ସେହିପରି ବଡ଼ ଦେଖାଯାଏ, କିନ୍ତୁ ଗୋଟିକ ପରେ ଗୋଟିଏ କାମ କରି ଯାଉଥିଲେ ଏତେ ବେଶି ଜଣାପଡ଼େ ନାହିଁ ବରଂ ବଡ଼ କାମଟା ସହଜରେ ହୋଇଯାଏ । ଏକା ଆମରି ଜୀବନରେ ନୁହେଁ, ସମସ୍ତ ଜଗତଟା ଏହିପରି ଚାଲିଛି । ତୁମେ ପାଣି, ପବନ, ଆକାଶ, ବୃକ୍ଷଲତା ଓ ଜୀବଜନ୍ତୁ—ଯେଉଁଠାକୁ ଚାହଁ, ସେଇ-କଥା ଦେଖିବ । ମୁହୂର୍ତ୍ତପରେ ମୁହୂର୍ତ୍ତ, ଘଣ୍ଟାପରେ ଘଣ୍ଟା, ଦିନପରେ ଦିନ ପ୍ରତ୍ୟେକ ନିଜ ନିଜର କାମ କରି ଚାଲିଛନ୍ତି । ଦିନକୁ ଟିକିଏ ଟିକିଏ ବଢ଼ି ଗୋଟିଏ ଛୋଟ ମଞ୍ଜି ବିରାଟ ଗଛ ହେଉଛି । ଟିକିଏ ଟିକିଏ ଜଡ଼ ଛୋଟ ଚଢ଼େଇଟିଏ ମହାଦେଶ ପାରି ହୋଇଯାଉଛି । ଗୋଟିକ ପରେ ଗୋଟିଏ ପାଣିଟୋପା ମେଘରୁ ପଡ଼ି ପୃଥିବୀ ବୁଡ଼େଇ ଦେଉଛି । ତୁମେ ମଧ୍ୟ ସେହିପରି ଟିକିଏ ଟିକିଏ କରି ଅନେକ କାମ କରିପାରିବ ।"

ଏହା କହି ମାଧବ ବାବୁ ରଜୀବ ଆଡ଼କୁ ଚାହିଁ ପଚାରିଲେ, କ'ଣ ରଜୀବ, କାଲି ଗଛରେ ପାଣି ଦେଇପାରିବୁ ନା ନାହିଁ ?"

ସେ ଉତ୍ତର ଦେବା ପୂର୍ବରୁ ମୀରା ତା ମାଆଙ୍କ ମୁହଁକୁ ଚାହିଁ ଚୁପ୍ ଚୁପ୍ କହିଲା । "ତା ନ ହେଲେ ଭାଇ ଆଜି ଖାଇପାରିବେ ନାହିଁ । ଛଅ କୁଇଣ୍ଟାଲ୍ ଖାଦ୍ୟ ସେ ଖାଇବେ କେମିତି ?"

ରାଜୀବର ମୁହଁ ଲାଜରେ ପଡ଼ି ଯାଇଥିଲା । ମାଆ ତା ପିଠିରେ ହାତ ମାରି କହିଲେ, "ତୁ ଯେଉଁଭଳି ହିସାବ କରୁଥିଲୁ, ତା ଭୁଲିଯା, ବାପା ! କେବଳ ଆଜିର କାମକୁ ଆଖି ଆଗରେ ରଖ । ଦେଖିବୁ କେତେ ସହଜରେ ସବୁକାମ ହୋଇଯିବ ଏବଂ ତୋତେ କେତେ ଆନନ୍ଦ ଲାଗିବ ।"

"ମୁଁ ନିଶ୍ଚୟ ଆଜି ଅଧିକ କାମ କରିପାରିବି," ରାଜୀବ କହିଲା ।

ମାଧବ ବାବୁ କହିଲେ, "ସାବାସ୍ ! ମୁଁ ତୋଠାରୁ କେବଳ ସେତିକି ଶୁଣିବାକୁ ଅପେକ୍ଷା କରିଥିଲି । ଚାଲ ଏଥର ଖାଇବାକୁ ଯିବା ।"



# ସତ୍ୟମେବ ଜୟତେ

ଶ୍ରୀ ବନମାଳୀ ବ୍ରହ୍ମଚାରୀ

ଥରେ ଜର୍ମାନ୍ ଦେଶର ଜଣେ ରାଜା ଫ୍ରାନ୍ସ ରାଜ୍ୟକୁ ବୁଲିବାକୁ ଯାଇଥିଲେ । ସେଠି ଦେଶର ଅନେକ ଦର୍ଶନୀୟ ସ୍ଥାନ ଓ ପଦାର୍ଥ ଦେଖିବା ପରେ ସେ ଜେଲଖାନା ଦେଖିବାକୁ ଗଲେ ।

କାରାଗାରର ଅଧ୍ୟକ୍ଷ ତାଙ୍କୁ ସାକ୍ଷାତ କରି କହିଲେ, "ଆପଣ ଯେଉଁ କଏଦୀଙ୍କୁ ଦେଖିସାରି ଯାହାକୁ ମୁକ୍ତ ଦେବାକୁ ଇଚ୍ଛା କରିବେ, ମୁଁ ତାହାକୁ ଜେଲଖାନାରୁ ଖଲାସ କରିଦେବି । ଆପଣଙ୍କ ଜେଲ ଦର୍ଶନ କଥା ମନେ ରଖିବା ପାଇଁ ଓ ଆପଣଙ୍କୁ ସମ୍ମାନ ଦେଖାଇବା ସକାଶେ ଏହି କରିବାକୁ ଆମ ରାଜା ମୋତେ ଆଦେଶ ଦେଇଛନ୍ତି ।"

ରାଜା ଏହା ଶୁଣି ଖୁସି ହେଲେ । ସେ ପ୍ରତ୍ୟେକ କଏଦୀଙ୍କ ପାଖକୁ ଗଲେ ଓ କିଏ କାହିଁକି ଜେଲ ଭୋଗୁଛି, ତାହା ପଚାରି ବୁଝିଲେ ।

ପ୍ରଥମ କଏଦୀ କହିଲା, "ଆଜ୍ଞା, ମୁଁ ବିନା ଦୋଷରେ ଏଠାକୁ ଆସିଛି ।" ଦ୍ୱିତୀୟ ଜଣକ କହିଲା, "ଏ ଦେଶରେ ନ୍ୟାୟ ବିଚାର ନାହିଁ । ଏ ରାଜାଙ୍କ ଅତ୍ୟାଚାରରେ ବଞ୍ଚିବା ଅସମ୍ଭବ ।"

କିଏ କହିଲା, "କେହି କାହାର ନାମରେ ମକଦ୍ଦମା କଲେ କର୍ମଚାରୀମାନେ କିଛି ନବୁଝି ଦଣ୍ଡ ଦେଉଛନ୍ତି ।"

ଆଉ ଜଣେ କହିଲା, "ବିଚାରପତିଙ୍କର ମୋ ଉପରେ ରାଗ ଥିଲା । ସେ ତାହା ସାଧିବା ପାଇଁ ଜୋର ଜବରଦସ୍ତି ଧରିଆଣି ମୋତେ ଜେଲରେ ପୂରାଇଛନ୍ତି ।"

ଏହିପରି ପ୍ରତ୍ୟେକ କଏଦୀ ନିଜର ଦୋଷ ସ୍ୱୀକାର ନ କରି ପରେ ଉପରେ ଦୋଷ ଲଦିଲେ । ସମସ୍ତେ କଥା ମିଛ କହି ଖସିଯିବାକୁ ଚେଷ୍ଟା କଲେ ।

ସେତେବେଳକୁ ଆଉ ଜଣେମାତ୍ର କଏଦୀ ଥାଏ । ରାଜା ତାକୁ ପଚାରିବାରୁ ସେ କହିଲା, "ମହାଶୟ ମୋ ପରି ଦୁଷ୍ଟ ଦୁନିଆରେ ନ ଥିବେ । ମୁଁ କେତେ ଲୋକଙ୍କର କେତେ ପ୍ରକାର କ୍ଷତି କରିଛି, ତାହା କହିଲେ ସରିବ ନାହିଁ । ସେତେବେଳେ ମୁଁ ନିଜର ଦୋଷ ବୁଝିପାରୁ ନ ଥିଲି । ବର୍ତ୍ତମାନ ମୁଁ ଜାଣୁଛି, ମୋର ଅପରାଧ ଗୁରୁତର, ମାତ୍ର ମୋତେ ଲଘୁ ଦଣ୍ଡ ମିଳିଛି ।"

ଏତିକି କହୁ କହୁ ତା ଆଖିରୁ ଶ୍ରାବଣର ବର୍ଷାପରି ଲୋତକଧାରା ବୋହିବାକୁ ଲାଗିଲା ।

ରାଜା ତାହାର କଥା ଶୁଣି ଭାରି ସନ୍ତୁଷ୍ଟ ହେଲେ ଏବଂ ସେହି କେବଳ ସତ କହିଥିବାରୁ ତାକୁ ମୁକ୍ତ କରିଦେବା ପାଇଁ ଇଚ୍ଛାପ୍ରକାଶ କଲେ ।

କାରାଗାରର ଅଧ୍ୟକ୍ଷ ରାଜାଙ୍କ ଇଚ୍ଛା ଅନୁସାରେ କାର୍ଯ୍ୟ କଲେ ।
ଶାସ୍ତ୍ରରେ ଅଛି—'ସତ୍ୟମେବ ଜୟତେ' । ସତ୍ୟର ଜୟ ହୁଏ ।



# ଅଗତ ପାଞ୍ଚ ସବୁ କାଞ୍ଚା

## କୁଞ୍ଜବିହାରୀ ଦାସ

ଜଣେ ବ୍ରାହ୍ମଣ ଥାଏ ଯେ ସେ ଅତି ଗରିବ, ଭିକ ମାଗି ପେଟ ପୋଷେ; କିନ୍ତୁ ସବୁ ଦୁଆରେ ଭିକ ମିଳେ ନାହିଁ । ଯେତେବେଳେ ପେଟରେ ଓଦା କନା ପକେଇ ତାକୁ ଶୋଇବାକୁ ହୁଏ । ଦିନେ କିନ୍ତୁ ତା'ର ସୌଭାଗ୍ୟ ପଲଖ ଥିଲା । ଜଣେ ଧନୀ ଲୋକ ତାକୁ ଗୁଡ଼ିଏ ଅଟା ଦେଲା—ଭିକ ପରିମାଣରୁ ଏହା ଶହେ ଗୁଣ ବେଶି । ଅଟା ମାଠିଆକ ଦେଖି ବ୍ରାହ୍ମଣ ମନରେ ବହୁତ ସ୍ୱପ୍ନ ଜାଲ ମାରିଲା । ଶେଯ ପାଖରେ ରଖି ତାକୁ ଚାହିଁ ଭାବିବାକୁ ଲାଗିଲା—

"ମୁଁ ବଡ଼ଲୋକ ହୋଇଥିଲେ କେଡ଼େ ମଜାରେ ଥା'ନ୍ତି; ମୋତେ ଏ ଦୁଆରେ ସେ ଦୁଆରେ ବୁଲି ଭିକ ମାଗିବାକୁ ହୁଅନ୍ତା ନାହିଁ । ଏତକ ଅଟାରେ ମୋର କେତୋଟି ଦିନ ସୁଖରେ ଚାଲିଯିବ ସତ; କିନ୍ତୁ ବସି ଖାଇଲେ ନଈବାଲି ସରେ । ମୁଁ କ'ଣ ବସି ବସି ଏତକ ନକାଶ କରିବି ? ନା, ମୁଁ ଏତକ ସାଇତି ରଖିବି; ଯେତେବେଳେ ରାଜ୍ୟରେ ଦୁର୍ଭିକ୍ଷ ପଡ଼ିବ, ମୁଁ ଏହାକୁ ମହଙ୍ଗାରେ ବିକିବି, ବଜାରକୁ ଯାଇ ଡାକ ପକାଇବି—'ଅଟା ନବ ଅଟା ?' ଅନେକ ଗରାହକ ମୋ ଅଟା କିଣିପାରିବେ । ଜଣେ କହିବ—ମୁଁ ଦଶ ଟଙ୍କାରେ ଅଟାତକ ନେବି ।' ଆଉ ଜଣେ କହିବ—'ମୁଁ ଏତକ ଲାଗି ପନ୍ଦର ଟଙ୍କା ଦେବି ।' ଆଉ ଜଣେ କୋଡ଼ିଏ ଟଙ୍କାରେ ରାଜି ହେବ । ମୁଁ କୋଡ଼ିଏ ଟଙ୍କା ନେଇ ଅଟାତକ ତାକୁ ବିକିବି ।"

"କିନ୍ତୁ ଏ କୋଡ଼ିଏ ଟଙ୍କା ମୁଁ କ'ଣ କରିବି ? ଲୁଗାପଟା ବା ହଳେ ଜୋତା କିଣିବି ? ନା ମୁଁ ଲୁଗାପଟା କିମ୍ବା ଜୋତା କିଣିବି ନାହିଁ । ମୁଁ ଏଇ କୋଡ଼ିଏ ଟଙ୍କାରେ ଗୋଟିଏ ବ୍ୟବସାୟ ଆରମ୍ଭ କରିବି । ମୁଁ ଦୁଇଟି ମାଈ ଛେଳି କିଣିବି । ସେମାନେ ଅନେକ ଛୁଆ ଜନ୍ମ କରିବେ । ଛେଳିମାନଙ୍କୁ କଞ୍ଚା ଘାସପତର ଖୋଇ ମୋଟା କରି ବଢ଼େଇବି । ଅଳ୍ପ ଦିନ ମଧ୍ୟରେ ବଢ଼ି ମୋର ଦଶଟି ଛେଳି ହେବେ । ଏ ଦଶଟି ଛେଳି ମୁଁ କ'ଣ କରିବି ? ମୁଁ ସେମାନଙ୍କୁ ବଜାରରେ ବିକିଦେବି । ବଜାରକୁ ଯାଇ ଡାକ ପକାଇବି—'ଛେଳି ନେବ କିଏ, ଛେଳି ?' ଏଇ ସମୟରେ ନେଳି ଜାମା ପିନ୍ଧି ମୁଣ୍ଡରେ ଲାଲ୍ ପଗଡ଼ି ଭିଡ଼ି ଜଣେ ଗାଉଁଲି ଲୋକ ଆସି ମୋ ପାଖରେ ପହଞ୍ଚି ଛେଳି ମୂଲାଇବ । ଶହେ ଟଙ୍କା ଦେଲେ ମୁଁ ତା'କୁ ଛେଳିତକ ବିକିଦେବି ।"

"ଏ ଶହେ ଟଙ୍କା ମୁଁ କ'ଣ କରିବି ? ମୁଁ କ'ଣ ସେଥିରେ ଗୋଟିଏ ଲାଲ୍ ସିଲ୍କ୍ କୋଟ୍ କିଣିବି ? ମୂଲ୍ୟବାନ୍ ଶେଯ, ତକିଆ ଓ ବିଛଣାଚଦର କିଣିବି ? ନା, ନା ! ଏଇ ସବୁ ଜିନିଷ କିଣି ମୁଁ ଟଙ୍କାତକ ନଷ୍ଟ କରିଦେବି ନାହିଁ ।"

ମୁଁ ଏ ଟଙ୍କାରେ ଦୁଇଟି ଗାଈ ଖର୍ଦ୍ଦି କରିବି । ଗାଈମାନେ ବାଛୁରୀ ଜନ୍ମ କରିବେ । ବାଛୁରୀମାନେ ବଢ଼ି ପୁଣି ଗାଈ ହେବେ । ବହୁତ ଦୁଧ ଦୁହିଁବି । ମୁଁ ଦୁଧ, ଦହି, ଛେନା, ଲହୁଣୀ ଘିଅ ବିକ୍ରି କରିବି । ମୁଁ ଗୋଟିଏ ଦୋକାନ ଖୋଲିବି । ସେଥିରେ ଶ୍ରେଷ୍ଠ ପାହାଡ଼ ପ୍ରମାଣ ମିଠା ଜିନିଷ ସଜାଇ ରଖିଥିବି । ଦୋକାନରେ ବସି ଡାକ ପକାଇବି 'କିଏ ନେବ ମିଠା, ରସୁଆଳ ମିଠା', ସଜ ତିଆରି ମିଠା ।' ମୋ ଡାକ ଶୁଣି ଟଙ୍କା ଧରିଥିବା ଅନେକ ପିଲାଙ୍କ ହାତ ମୋ ଆଡ଼କୁ ଲମ୍ବି ଆସିବ । ମୋ ଡାକ ଶୁଣି ସେମାନଙ୍କ ପାଟି ପାଣେଇଯିବ । ଖାଲି ପିଲା ନୁହଁନ୍ତି, ବହୁ ସ୍ତ୍ରୀ ପୁରୁଷ ମଧ୍ୟ ମୋ ମିଠା କିଣି ଆସିବେ ।"

"ଏମିତି ମୁଁ ଚମତ୍କାର ବ୍ୟବସାୟ କରିବି ଓ ଅଳ୍ପ ଦିନରେ ବଡ଼ଲୋକ ହୋଇଯିବି ।"

"ଏତେ ସବୁ ଟଙ୍କା ମୁଁ କ'ଣ କରିବ? ଗୋଟିଏ ହାତୀ କିଣିବ? ଦେଉଳ ତୋଳାଇବ? ନା, ମୁଁ ଭଲଭାବେ ଜାଣେ ଏ ଟଙ୍କା ମୁଁ କେମିତି ଖର୍ଚ୍ଚ କରିବ। ମୁଁ ହୀରା ଆଉ ମୁକ୍ତା ବ୍ୟବସାୟ କରିବ। ନେଳ ପୋଷାକ ପିନ୍ଧି ମୁଣ୍ଡରେ ନାଲି ପଗଡ଼ି ଭିଡ଼ି—ମୁଁ ରାଜାଙ୍କ ନିକଟକୁ ଯିବ। ହୀରା, ନୀଳା, ମଣି-ମାଣିକ ରାଜାଙ୍କୁ ଦେଖାଇବ। ରାଜା ସେସବୁ ଦେଖି ଖୁସି ହେବେ ଓ ରାଣୀଙ୍କ ଲାଗି କିଣିନେବେ। ତା'ପରେ ମୁଁ ହୀରା ମୋତି ଓ ମୂଲ୍ୟବାନ୍ ପଥର ବ୍ୟବସାୟକୁ ବଢ଼ାଇ ଚାଲିବ ଓ ଜଣେ ଖୁବ୍ ଧନୀଲୋକ ଭାବରେ ପରିଚିତ ହେବ।"

"ତା'ପରେ ମୁଁ ଗୋଟିଏ ପ୍ରାସାଦ ତୋଳାଇବ। ଚମତ୍କାର ଘାସ ପଡ଼ିଆ ଓ ବଗିଚା କରିବ। ବଗିଚାରେ ନାନା ପ୍ରକାର ଗୋଲାପ ଫୁଟିଥିବ। ବଗିଚା ପୋଖରୀରେ ନାଲି, ନୀଳ, ଧଳା ପଦ୍ମ ଫୁଟିଥିବ। ହଂସମାନେ ପହଁରୁଥିବେ।"

"ତା'ପରେ କେତେ ଧନୀଲୋକ ମୋ ପାଖକୁ ଆସିବେ ଓ ସେମାନଙ୍କ ଝିଅକୁ ମୋତେ ବାହା ହେବାକୁ ଅନୁରୋଧ କରିବେ। ମୁଁ କ'ଣ ସେଇ ବଡ଼ଲୋକ ମାନଙ୍କ କନ୍ୟାରୁ ଗୋଟିଏ ବାହାହେବ? ନା, ନା, ରଜା ନିଜେ ମୋ ଦୁଆରକୁ ଆସିବେ, ତାଙ୍କ ଝିଅକୁ ବାହା ହେବା ଲାଗି କହିବେ। ଜେମାମଣି—ଖୁବ୍ ସୁନ୍ଦରୀ, ତାଙ୍କ କେଶ ଲମ୍ବ ଓ ଚକ୍ଷୁଦୁଇଟି ଖୁବ୍ ସୁନ୍ଦର ହୋଇଥିବ।"

ତା'ପରେ ମୋର ଗୋଟିଏ ପୁଅ ହେବ। ଆଉ ଗୋଟିଏ ପୁଅ ମଧ୍ୟ ହେବ। ଗୋଟିଏ ଝିଅ ବି ହେବ। ମୁଁ ପିଲାମାନଙ୍କ ସାଙ୍ଗରେ ବଗିଚାରେ ଖେଳିବ। ଖେଳି, ଯେତେବେଳେ କ୍ଳାନ୍ତ ହେବ, ସେତେବେଳେ ସ୍ତ୍ରୀଙ୍କୁ ପିଲାମାନଙ୍କ ସଙ୍ଗେ ଖେଳିବା ଲାଗି କହିବ। ସ୍ତ୍ରୀ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ଥାଇ ଖେଳିବାକୁ ଅସମର୍ଥ ହେବେ।"

"କିନ୍ତୁ ମୁଁ ତ କ୍ଳାନ୍ତ ହୋଇଥିବ, ମୋର ବିଶ୍ରାମ ଦରକାର। ସେତେବେଳେ ପିଲା ଗୋଳମାଳ କଲେ ମୁଁ ସେମାନଙ୍କୁ ଗାଳି ଦେବ।

ମୋ ଗାଳି ନ ଶୁଣିଲେ, ମୁଁ କହୁଚି ଗଗିଯିବ ଖଣ୍ଡିଏ ବାଡ଼ି ଧରି ସେମାନଙ୍କୁ ମାଡ଼ ଦେବ ? ମାଡ଼ ଦେବ ! ହଁ ମାଡ଼ ଦେବ ।"

ପ୍ରକୃତରେ ପିଲାମାନଙ୍କୁ ମାଡ଼–ଦେଉଛି ବଗ୍ଘର ବ୍ରାହ୍ମଣ ହାତକୁ ଏପରିଭାବେ ଝୁଣ୍ଟିଆଡ଼ ଦେଲା ଯେ ତାହା ଅଣ୍ଟା ମାଠିଆରେ ବାଜିଲା— ମାଠିଆଟି ଭାଙ୍ଗିଗଲା, ଅଣ୍ଟାତକ ସବୁ ବାଲିରେ ବୁଣି ହୋଇଗଲା ।

ଏତେ ଜୋର୍‌ରେ କ ଶବ୍ଦ ହେଲା ? ବ୍ରାହ୍ମଣ ଶେଯରୁ ଉଠି ଦେଖିଲା ବେଳକୁ କଥା ସରିଯାଇଛି । ମାଠିଆଟି ଗୁଣ୍ଡା ହୋଇଯାଇଛି ଓ ଅଣ୍ଟାତକ ବାଲିରେ ମିଶିଯାଇଛି । ସେ ଗୃହଆଡ଼କୁ ଅନାଇଲା, ରାଜକନ୍ୟା କୋଠାଘର, ବଗିଚ୍ଚ କନ୍ଧା ପିଲାଙ୍କିଏ କିଛି ନାହିଁ । ଶୂନ୍ୟ କୁଡ଼ିଆଟି ହାହାକାର କରୁଛି ମାତ୍ର ।



# ଟୁଆଁ ଟୁଇଁଙ୍କ ବୁଦ୍ଧି

**ଅଧ୍ୟାପକ ମହେଶ୍ୱର ମହାନ୍ତି**

ଗୋଟିଏ ପାହାଡ଼ ତଳିଆ ଛୋଟ ଗାଆଁରେ ବୁଢ଼ୀଟିଏ ଥାଏ । ଘରେ ତାର ଟିକି ଟିକି ନାତି ନାତୁଣୀ ଛଡ଼ା ଆଉ କେହି ନ ଥାନ୍ତି । ବୁଢ଼ୀଟି ଭାରି ଗରିବ । ସବୁଦିନେ ମଣ୍ଡାପିଠା ତିଆରି କରି ଟୋକେଇରେ ପୂରେଇ ପାଖ ଗାଆଁକୁ ବିକ୍ରୀ କରିବାକୁ ନିଏ, ସଞ୍ଜବେଳକୁ ଫେରି ଆସେ । ବୁଢ଼ୀ ଫେରିବା ବେଳକୁ ପିଲାମାନେ ଦିନେ ଦିନେ ନିଦରେ ଶୋଇ ପଡ଼ିଥାଆନ୍ତି ।

ବୁଢ଼ୀ ଦିନେ ପିଠା ଟୋକେଇ ମୁଣ୍ଡରେ ଧରି ଜଙ୍ଗଲ ବାଟରେ ଚାଲିଛି । ହଠାତ୍ ଗୋଟାଏ ବାଘ ଆସି ତା ଆଗରେ ଠିଆ ହୋଇଗଲା । ବାଘ କହିଲା—

ହଇଲୋ ବୁଢ଼ୀ !
ଇଆଡ଼େ କୁଆଡ଼େ ଯାଉଛୁ ମାଡ଼ି
ଭୋକରେ ମୋ ପେଟ ଯାଉଛି ପୋଡ଼ି
ଖାଇବି ତୋହର ମୁଣ୍ଡ ମୋଡ଼ି ।

ବୁଢ଼ୀ ଡରିବାର ଲୋକ ନୁହେଁ । ସେ ସାହସ ଦେଖାଇ କହିଲା—

ହଇରେ ହୁଣ୍ଡା
ଖାଇବୁ ତ ଖାଆ ଦୁଇଟା ମଣ୍ଡା
ପେଟଟା ତୋହର ହୋଇବ ଥଣ୍ଡା ।

ବାଘ କହିଲା—"ଦୁଇଟା ମଣ୍ଡାରେ ମୋ ପେଟ ପୂରିବ ନାହିଁ । ମୋତେ ଗଣ୍ଡାଏ ଦେ ।" ବୁଢ଼ୀ ବାଧ୍ୟ ହୋଇ ଟୋକେଇରୁ ଗଣ୍ଡାଏ ମଣ୍ଡା କାଢ଼ି ବାଘ ଆଗକୁ ଘଞ୍ଚାଇ ଦେଲା । ବାଘ ମଣ୍ଡା ତକ ଖାଇ ବାଟ ଛାଡ଼ିଦେଲା । ବୁଢ଼ୀ ଆଗକୁ ଚାଲିଲା । ବାଘ ମୁହଁରେ ତ ମଣ୍ଡାପିଠାର ସୁଆଦ ଲାଗିଛି ସେ ଛାଡ଼ୁଛି କେଉଁଠି ? ସେ ଆଉ ଗୋଟାଏ ବାଟରେ ବୁଲି ଆସି କିଛି ଦୂରରେ ବୁଢ଼ୀକୁ ପୁଣି ବାଟ ଓଗାଳି ଠିଆହେଲା । କହିଲା—

ହଇଲୋ ବୁଢ଼ୀ !
ପେଟଟା ମୋହର ଯାଉଛି ପୋଡ଼ି
ଖାଇବି ତୋର ମୁଣ୍ଡ ମୋଡ଼ି ।

ବୁଢ଼ୀ ବାଘକୁ ଚିହ୍ନି ପାରି କହିଲା—

ହଇରେ ହୁଣ୍ଡା
ଏଇନେ ଖାଇଲୁ ଗୁଡ଼ାଟା ମଣ୍ଡା
ପେଟଟା ତୋହର ହୋଇନ ଥଣ୍ଡା ?

ବାଘ କିଛି କଥା ଶୁଣିଲା ନାହିଁ । ସେ ସେମିତି ବାଟ ଓଗାଳି ଠିଆ ହୋଇ ରହିଲା । ବୁଢ଼ୀ ବାଧ୍ୟ ହୋଇ ଟୋକେଇ ଖୋଲି ବାଘ ମୁହଁରେ ପୁଣି ଗୁଡ଼ାଟା ମଣ୍ଡା ପିଠା ଫୋପାଡି ଦେଇ ଆଗକୁ ଚାଲିଲା । ବାଘ ମଣ୍ଡା ଗୁଡ଼ାଟା ଟାକୁକିନା ଗିଳିଦେଇ ମୁହଁ ହାତ ଚାଟିଦେଲା । ବୁଢ଼ୀ କିଛି ଦୂର ଯାଇଛି ବାଘ ଆଉ ଗୋଟିଏ ବାଟରେ ବୁଲିଯାଇ ପୁଣି ବାଟ ଓଗାଳିଲା । ବୁଢ଼ୀ ବିଚରା କରେ କଅଣ ? ବାଘକୁ ଏଥର ଆଉ ଗୁଡ଼ାଟା ମଣ୍ଡା ପିଠା ଦେଇ ନିଜ ବାଟରେ ଚାଲିଲା । ଜଙ୍ଗଲ ପାର ନ ହେଉଣୁ ବାଘ ଏମିତି ବୁଢ଼ୀକୁ ଥରକୁ ଥର ଧମକାଇ ସବୁତକ ମଣ୍ଡାପିଠା ଖାଇଦେଲା । ଶେଷରେ କହିଲା—"ବୁଢ଼ୀ, ଆଉ ତ ପିଠା ନାହିଁ, ଏଥର ତୋତେ ଖାଇବି । ତା ନ ହେଲେ ମୋ ପେଟ ପୂରିବ ନାହିଁ ।"

ବୁଢ଼ୀ କହିଲା—"ବାଘ ମାମୁଁ, ଘରେ ମୋର ଟୁଆଁ ଟୁଇଁ ନାଆଁରେ ଦୁଇଟି ନାତି ନାତୁଣୀ ଅଛନ୍ତି । ତୁ ମୋତେ ଖାଇଦେଲେ

ସେମାନେ ହଇରାଣ ହେବେ । ମୁଁ ନେହୁରା ହୋଇ କହୁଛି ମୋତେ ଛାଡ଼ିଦେ ।” ବାଘ କନ୍ଦୁ ବୁଢ଼ୀ କଥା ନ ଶୁଣି ବୁଢ଼ୀକୁ ଖାଇଦେଲା । ବୁଢ଼ୀର ଲୁଗା ପିନ୍ଧି ଓ ତାର ଟୋକେଇ ଧରି ସଞ୍ଜରେ ଯାଇ ବୁଢ଼ୀ ଘରେ ପହଞ୍ଚିଲା । ସେ ଭାବିଲା ପିଠା ଖାଇଲି, ବୁଢ଼ୀକୁ ଖାଇଲି । ପିଲା ଦୁଇଟାଙ୍କୁ କାହିଁକି ଛାଡ଼ିବି ? ତାଙ୍କର କଅଁଳିଆ ମାଂସ ନିଶ୍ଚେ ଭାରି ସୁଆଦିଆ ଲାଗିବ ।

ସେଦିନ ବୁଢ଼ୀମା ଫେରିବାର ଡେରି ହେବା ଦେଖି ପିଲା ଦୁଇଟି ନିଦରେ ଶୋଇ ଯାଇଥିଲେ । ବାଘ ଯାଇ କବାଟ ବାଡ଼େଇଲା । ପିଲା-ମାନଙ୍କର ନିଦ ଭାଙ୍ଗିଗଲା । ସେ ଦୁହେଁ ଧଡ଼ପଡ଼ି ଉଠି ବସିଲେ । ପଚାରିଲେ– "କିଏ କବାଟ ବାଡ଼ଉଛୁ ?"

ବାଘ ତା'ର ସ୍ୱର ବଦଳାଇ କହିଲା—"ପିଲାମାନେ ମୁଁ ଆଈ ଆସିଛି । କବାଟ ଖୋଲ ।" ବାଘର ସ୍ୱର ଶୁଣି ପିଲାମାନଙ୍କ ମନରେ ସନ୍ଦେହ ହେଲା । ଭଉଣୀ ତାର ଭାଇକୁ କହିଲା—"ଭାଇ, ଆଈମା' ତ ଆସିଲେ କହେ ଟୁଆଁରେ କବାଟ ଖୋଲ, ଟୁଇଁଲୋ କବାଟ ଖୋଲ । ଏ ତ କିଏ ଗୋଟାଏ ଦୁଲଦୁଲ କରି କବାଟ ବାଡ଼ଉଛୁ । ଏ ଆମର ଆଈ ନୁହେଁ । ବାଘ ହେବ ନିଶ୍ଚେ ।"

ବାଘ ଭାବିଲା—ପିଲା ଦୁଇଟା ବୋଧେ ତାଙ୍କୁ ଚିହ୍ନି ପକାଇଲେଣି । ତେଣୁ ସେ ସାଙ୍ଗେ ସାଙ୍ଗେ ପୁଣି ସ୍ୱର ବଦଳାଇ କହିଲା—ଟୁଆଁରେ କବାଟ ଖୋଲ, ଟୁଇଁଲୋ କବାଟ ଖୋଲ ।"

ଟୁଆଁ ଟୁଇଁ ଏ କଥାଶୁଣି କହିଲେ । "ତୋ ପାଟି କ'ଣ ଏତେ ମୋଟା ଶୁଭୁଛି ? ଆମ ମାଆର ପାଟି ତ ଭାରି ସରୁ । ତୁ ଆମ ମାଆ ନୋହୁ ।

ବାଘ କହିଲା—ଥଣ୍ଡାରେ ଆଜି ବୁଲି ବୁଲି ମୋ ତଣ୍ଟି ପଡ଼ି ଯାଇଛି । ମୋତେ ଭାରି ଜ୍ୱର । ଚଞ୍ଚଳ କବାଟ ଖୋଲ ।"

ପିଲା ଦୁହେଁ କହିଲେ—"ଆଚ୍ଛା, ତୁ ଯଦି ଆମର ବୁଢ଼ୀ ମାଆ, ତେବେ ଝରକାବାଟେ ପିଠା ଟୋକେଇ ଦେଖାଇଲୁ ।" ବାଘ ଝରକା

ବାଟେ ପିଠା ଟୋକେଇ ଦେଖାଇଦେଲା । ପିଲା ଦୁହିଁଙ୍କର ତଥପି ବିଶ୍ୱାସ ହେଲା ନାହିଁ । ସେମାନେ ପୁଣି କହିଲେ—"ଆଚ୍ଛା, ତୁ ଯଦି ଆମ ବୁଢ଼ୀ ମାଆ, ତେବେ ତୋର ଲୁଗା ଦେଖାଇଲୁ ?"

ବାଘ ଝରକାବାଟେ ବୁଢ଼ୀର ଲୁଗା ଦେଖାଇ ଦେଲା ।

ପିନ୍ଧା ଲୁଗା ଆଉ ପିଠା ଟୋକେଇ ଦେଖି ଦୁହିଁଙ୍କ ମନରେ ବିଶ୍ୱାସ ଆସିଲା । ସେମାନେ କବାଟ ଖୋଲିଦେଲେ । ବାଘ ଘର ଭିତରକୁ ପଶିଗଲା ।"

ଟିଆଁ ପଚାରିଲା—"ମାଆ, ଆଲୁଅ ଲଗାଇବି ? ବାଘ କହିଲା ନାଇଁରେ ପୁଅ, ଅଲୁଅ ଲଗ ନା । ଚୁପ୍‌ଚାପ୍ ଶୋଇପଡ଼ । ମୋ ଦେହ ଭଲନାହିଁ ।" ଟୁଇଁ କହିଲା—'ମାଆ, ଗୋଡ଼ ଟିକିଏ ଆଉଁସି ଦେବ ?' ବାଘ ସାଙ୍ଗେ ସାଙ୍ଗେ ଲୁଗାରେ ଗୋଡ଼କୁ ଘୋଡ଼େଇ ପକେଇ କହିଲା— 'ଥାଉ ଲେ ଝିଅ, ଥାଉ । ବୁଲି ବୁଲି ଗୋଡ଼ ଦରଜ । ହାତ ମାର ହେଉନାହିଁ ।

ବାଘ ଏଥର ଶୋଇପଡ଼ି ମିଛ ମିଛ ଜରରେ କମ୍ପିବାକୁ ଲାଗିଲା । ପିଲାଙ୍କୁ ଡାକିଦେଇ କହିଲା—'କଚ୍ଛୁ ଆଉ ପାଟିତୁଣ୍ଡ ନ କରି ଚୁପ୍‌ଚାପ୍ ଜଲଦି ଶୋଇପଡ଼ କହୁଛି । ମୋ ଦେହ ଭଲ ନାହିଁ ।' ଏ କଥା ଶୁଣି ପିଲାମାନେ ଶୋଇଗଲେ । ବାଘ ବି ଶୋଇଗଲା । ବାଘ ଭାବିଲା—ଆଜି ତ ଟୋକେଇଏ ପିଠା ଆଉ ବୁଢ଼ୀକୁ ଖାଇଛୁ । ଏବେ ଭୋକ ନାହିଁ । ରାତି ପାହାନ୍ତା ବେଳକୁ ପିଲା ଦୁଇଟାକୁ ଜଳଖିଆ କରି ଅନ୍ଧାର ଥାଉଁ ଥାଉଁ ବଣକୁ ପଳାଇବି । 'ତେଣେ ଟିଆଁ ଟୁଇଁ ସିନା ଶୋଇଗଲେ, ହେଲେ ତାଙ୍କ ଆଖିରେ ନିଦ ନାହିଁ । ସେମାନେ ଭାବୁଥାଆନ୍ତି, ଏ ଆମର ଅସଲ ମା ନୁହେଁ । ଆନ୍ଥ ମା ବେଶରେ ବୋଧେ ଆଉ କିଏ ଆସିଛି ।'

ବାଘର ତ ପେଟ ଥଣ୍ଡା ଥିଲା । ସେ ନିଦରେ ଶୋଇ ଖୁବ୍ ଜୋରରେ ଘୁଁଘୁଡ଼ି ମାରିଲା । ବାଘ ନିଦ ବାଉଳାରେ କଡ଼ ଲେଉଟାଇଲା ବେଳକୁ ତା' ଦେହରୁ ଲୁଗା ଖସିଗଲା । ତା'ର ଅସଲ

ରୂପଟା ଏବେ ଜଣା ପଡ଼ିଗଲା । ଟୁଆଁ ଟୁଇଁ ସନ୍ତକୁ ସତ ଝାପ୍‌ସା ଅନ୍ଧାରରେ ଦେଖିଲେ—ତଳେ ଗୋଟାଏ ବାଘ ଶୋଇଛି । ସେମାନେ ପାଟିତୁଣ୍ଡ ନ କରି ଚୁପ୍‌ଚାପ୍ କବାଟ ଖୋଲି ଘରୁ ବାହାରିଗଲେ, କିନ୍ତୁ ଯିବେ କୁଆଡ଼େ ? ଅନ୍ଧାର ରାତି, ପାହାଡ଼ିଆ ଅଞ୍ଚଳ, ପୁଣି ଏକୁଟିଆ ଘର । କାଳେ ବାଘର ନିଦ ଭାଙ୍ଗିଯିବ । ସେ ପଛରୁ ଆସି ମାଡ଼ିବସିବ । ତେଣୁ ପିଲା ଦୁହେଁ କିଛି ଉପାୟ ନ ପାଇ ଘରଠାରୁ ଅଳ୍ପ ଦୂରରେ ଥିବା ଗୋଟାଏ ଗଛ ଉପରେ ଚଢ଼ିଗଲେ । ସେଇଠି ଗୋଟିଏ ଡାଳକୁ ଧରି ବସି ରହିଲେ । ଭାବିଲେ କାଳେ ରାତି ପାହିଲେ ମାଆ ଆସିବ ।

ଏତିକିବେଳେ ବାଘର ନିଦ ଭାଙ୍ଗିଗଲା । ସେ ଦେଖିଲା, ଟୁଆଁ ଟୁଇଁଙ୍କର ବିଛଣା ଖାଲି । ସେ ଭାବିଲା ପିଲାଦୁଇଟା ନିଶ୍ଚେ ତାକୁ ଚିହ୍ନି ପାରିଛନ୍ତି ଓ ଗାଆଁ ଭିତରକୁ ପଳାଇଛନ୍ତି, ଲୋକମାନଙ୍କୁ ଡାକି ଆଣିବା ପାଇଁ । ସେ ରାଗରେ ଖାଲି ମାଟି ଉପରେ ଲାଙ୍ଗୁଳ ପିଟିବାକୁ ଲାଗିଲା । ଭାବିଲା ଆଚ୍ଛା, ପିଲା ଦୁଇଟାଙ୍କର ଏତେ ବୁଦ୍ଧି ! ମୋତେ ଠକି ଚାଲିଗଲେ । ଏଥି ଲାଗି ସେ ଟୁଆଁ ଟୁଇଁଙ୍କୁ ଖୋଜିବାକୁ ବାହାରିଗଲା ।

ବାଘ କିଛି ଦୂର ଯାଇଛି, ଗୋଟିଏ ଗଛ ମୂଳରେ ଠିଆ ହୋଇ ଉପରୁ ସୁଁ ସୁଁ କାନ୍ଦଣାର ସ୍ୱର ଶୁଣିଲା । ଟୁଆଁ ଟୁଇଁ ଗଛ ଉପରେ ବସି ଆଈମା କଥା ମନେ ପକାଇ କାନ୍ଦୁଥିଲେ । ବାଘ ଗଛ ଉପରକୁ ଚାହିଁ ଅନ୍ଧାରରେ ଅନୁମାନ କରିନେଲା ପିଲା ଦୁଇଟା ଏଇଠି ଲୁଚିଛନ୍ତି । ସେ ଭାରି ଖୁସି ହୋଇଗଲା । କହିଲା –'ହୁଁ-ହୁଁ—ଏଇଠି ଆସିକରି ଲୁଚିଛ, ନା ?' ତାପରେ ସେ ଗଛ ଚଢ଼ିବାକୁ ଚେଷ୍ଟା କଲା; କିନ୍ତୁ ପାରିଲା ନାହିଁ । ଗୋଟାଏ ଉପାୟ ପାଞ୍ଚି ଖୁବ୍ ନରମ ଗଳାରେ କହିଲା—ଟୁଆଁ ଟୁଇଁ, ତୁମେ ଭାରି ଭଲ ପିଲା । ତୁମ ଆଈ ମା' ଯେଉଁଠି ଅଛି, ମୁଁ ଜାଣେ । ତୁମେ କାନ୍ଦ ନାହିଁ । ଓହ୍ଲାଇ ଆସ, ତୋଫାନ ଆସୁଛି, ଗଛରୁ ପଡ଼ିଯିବ ।'

ଟୁଆଁ ଭାରି ଚତୁର । ସେ କହିଲା—'ତୁମେ ଟିକଏ ଆମକୁ ଓହ୍ଲାଇ ଦିଅ । ବାଘ କହିଲା—'ଏତେ ସରୁଆ ଗଛରେ ମୁଁ ଚଢ଼ି ପାରିବି ନାହିଁ । ତୁମେ ଯେମିତି ଚଢ଼ିଥିଲ, ସେମିତି ଓହ୍ଲାଇ ଆସ ।'

ଝୁଆଁ କହିଲା—'ରୋଷେଇ ଘରେ ପିଠାଛଣା ତେଲ ଅଛି । ସେ ତେଲ ଆଣି ଗଛର ଗଣ୍ଡିରେ ଭଲକରି ବୋଳି ଦିଅ । ଆଉ ଗଛ ମୂଳେ ଦୁଇଟା ବଡ଼ ପଥର ଆଣି ରଖିଦିଅ । ଆମେ ଖସି ଖସି ଯାଇ ପଥର ଉପରେ ଓହ୍ଲାଇ ପଡ଼ିବୁ ।

ବାଘ ଧାଇଁ ଯାଇ ରୋଷେଇ ଘରୁ ପିଠାଛଣା ତେଲ ଆଣି ଗଛର ଗଣ୍ଡିରେ ଜୁଡ଼ୁବୁଡ଼ କରି ବୋଳିଦେଲା । ଗଛତଳେ ଦୁଇଟା ବଡ଼ ବଡ଼ ପଥର ଆଣି ରଖିଦେଲା । ତାପରେ କଅଁଳ ସ୍ୱରରେ ଡାକିଲା—'ଆସ, ଓହ୍ଲାଇ ପଡ଼ ।' ଝୁଆଁ ଝୁଇଁ ଆଉ ଓହ୍ଲାଇବେ କ'ଣ, ଏଥର ଖାଲି କରି କରି ହୋଇ ହସିବାକୁ ଲାଗିଲେ । ବାଘ ରାଗିଗଲା । ସେ ଗର୍ଜନ କରି ଗଛର ଗଣ୍ଡି ଉପରକୁ କୁଦା ମାରି ହାତ ବଢ଼ାଇ ତାଙ୍କୁ ଧରିବାକୁ ଚେଷ୍ଟାକଲା; କିନ୍ତୁ ସେ ଯେତେଥର ଡେଇଁ, ପ୍ରତି ଥର ଖସ୍‌କରି ଖସି ଆସି ଦୁଲ୍ କରି ପଥର ଉପରେ କଚାଡ଼ିହୋଇ ପଡ଼େ । ବାଘର ଆହୁରି ରାଗ ହେଲା । ସେ ଏଥର ଆହୁରି ଜୋରରେ କୁଦିଲା ଓ ଆହୁରି ଜୋରରେ ପଥର ଉପରେ କଚାଡ଼ି ହୋଇପଡ଼ିଲା । ଶେଷରେ ପଥର ଉପରେ ପିଟି ହୋଇ ବାଘର ଗୋଡ଼ ଭାଙ୍ଗିଗଲା ଓ ମୁଣ୍ଡ ଫାଟିଗଲା । ସେ ଗାଁ ଗାଁ ଚିତ୍କାର କରି ସେଇଠି ପଡ଼ି ମରିଗଲା ।

ଝୁଆଁ ଝୁଇଁ ଏ କଥା ଦେଖି ଆହୁରି ହସିବାକୁ ଲାଗିଲେ । ରାତି ପାହିଲା । ଝୁଆଁ ଝୁଇଁ ଧୀରେ ଧୀରେ ଗଛରୁ ଓହ୍ଲାଇ ଘରକୁ ଗଲେ । ଆଈ ମା'ର ବାଟ ଚାହିଁ ଚାହିଁ ସେମାନଙ୍କ ଆଖିରୁ ପାଣି ମଲା; କିନ୍ତୁ ଆଈ ମା' ଫେରିଲା ନାହିଁ ।



# ମରା ମରା କହୁ ରାମ ରାମ

## ପଠାଣି ପଟ୍ଟନାୟକ

ଲୋକଗହଳରେ ବଡ଼ଦାଣ୍ଡ ଉଚ୍ଛୁଳ ପଡ଼ୁଥାଏ । ଭାରତବର୍ଷର ଚାରିଆଡ଼ କେତେ ବର୍ଣ୍ଣ କେତେ ଭେକର ଅସୁମାରି ଲୋକ ପୁରୀର ରଥଯାତ୍ରା ଦେଖିବା ପାଇଁ ଏକାଠି ହୋଇଥାଆନ୍ତି । ଯୁଆଡ଼େ ଚାହିଁବ, ସେ ବାଟରେ କେବଳ ମୁଣ୍ଡମାଳ । ଥାଳ ଚାଲିଯିବ ତଳେ ! ସମସ୍ତଙ୍କର ଆଖି ଜଗନ୍ନାଥଙ୍କର ସିଂହଦୁଆର ଆଡ଼କୁ, ଯେଉଁଠି ତିନୋଟି ରଥ କେତେ ରଙ୍ଗରେ ସଜା ହୋଇ ଥୁଆ ହୋଇଥାଏ ।

ରଥ ଚାଲିବା ପାଇଁ ଅନେକ ସମୟ ଅପେକ୍ଷା କରିବାକୁ ପଡ଼ିବ । ତଥାପି ଏ ଅପେକ୍ଷାରେ କ୍ଳାନ୍ତି ଆସୁନାହିଁ । ଚାରିଆଡ଼ୁ ଭକ୍ତି-ସଙ୍ଗୀତର ଲହରୀ ଭାସିଆସୁଛି ମାଇକ୍ ଜରିଆରେ, ଓଡ଼ିଆ ଭାଷାରେ ଶୁଣାଯାଉଛି—

ଆହେ ନୀଳଗିରି,
ତୁମ୍ଭ ଶ୍ରୀଭୁଜେ ଦୟାଣା କେଶ କେଶ ।
ବଡ଼ଦାଣ୍ଡ ଦେଖି ମନ ତୋଷ,
ରେଣୁ ମାତ୍ର ତେଣୁ କଲି ଗ୍ରାସ,
କ୍ଷୀର-ନିଖଚୂଡ଼ରେ ମନ ନ ବୋଧଇ
ଠାକୁ ତୋରାଣିରେ ମନ ତୋଷ ।

× × ×

କହେ ସାଲବେଗ ହୀନ ଜାତି,
ଶ୍ରୀରଙ୍ଗା ଚରଣେ ରହୁ ମତି !
ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛି
ଦୟା କର ମୋରେ ଲକ୍ଷ୍ମୀପତି ।
ଆହେ ନୀଳଗିରି ।

ଆଜି ଗୋଟିଏ ଦିଗରୁ ଦଳ ଦଳ ହୋଇ ସଂକୀର୍ତ୍ତନ ଦଳ ମାଡ଼ି ଆସୁଅଛନ୍ତି । ହାତରେ ଖୋଳ, କରତାଳ, ବାନା, ବଇରଖ, ଧରି ହରିନାମ ଜପ କରି ଉଦଣ୍ଡ ନୃତ୍ୟ କରିବାରେ ସେମାନେ ବ୍ୟସ୍ତ । ସେତିକବେଳେ କେହି ଜଣେ ଭକ୍ତ ଲହରି ଛୁଟାଇ ଗାଇ ଦେଉଛି ବଙ୍ଗଳା ସଙ୍ଗୀତ—

କହେ ସାଲବେଗ ହୀନ ଓ ରଙ୍ଗା ଚରନେ,
ଓହେ ଶ୍ୟାମ ଅଲ ଦୟା ଥାକିବ ମଧୁପାନେ ।
ଦିବସ ରଜନୀ କାଲ୍ ବନୁ ନାହିଁ ଜାନ ହେ ।

ଆଜି ଗୋଟିଏ ଦିଗରେ ଉତ୍ତର-ଭାରତର ଦଳ ଦଳ ଯାତ୍ରୀ ସ୍ୱର ଧରି ଭଜନ ଆରମ୍ଭ କରି ଦେଇଥାନ୍ତି । ପୁରୁଷ ଓ ସ୍ତ୍ରୀ ସମ-ତାଳରେ ସ୍ୱର ଧରି ଗାଇ ଚାଲିଛନ୍ତି ହିନ୍ଦୀ ଭାଷାରେ ଭଜନ—

"କହିଁ ନ ଭଜୋ କହିଁ ନ ଭଜୋ,
ସାଲବେଗ ପିଆରେ ବଲେ ସଜନା
ଝୁଟ୍ ଦୁନୟା ବଚେ କହିଁରେ ମଜୋ !

ବଙ୍ଗଳା ହେଉ, ଓଡ଼ିଆ ହେଉ, ହିନ୍ଦୀ ହେଉ, ଚାରିଦିଗରୁ ଭଜନ ସଙ୍ଗୀତରେ ମନ ପ୍ରାଣ ଉଚ୍ଛୁଳ ଉଠୁଛି । ଗୁଣୁଗୁଣୁ କାନରେ ବାରମ୍ବାର ବାଜି ଯାଉଛି ସେହି ଗୋଟିଏ କଥା—"କହେ ସାଲବେଗ କାଳିଆ ନବରଙ୍ଗ", "କହେ ସାଲବେଗ ହୀନ ଜାତିରେ ମୁଁ ଯବନ", "କହେ ସାଲବେଗ ହୀନ ସେ ପାଦେ ଶରଣ ।"

ଏ ସାଲବେଗ ପୁଣି କିଏ ? ସେ ପୁଣି ଜାତିରେ ଯବନ; ଅଥଚ ତାଙ୍କର ଲେଖାରେ କି ଅପୂର୍ବ ସଙ୍ଗୀତ କାଳିଆ କାହ୍ନୁକୁ ସ୍ମରଣ କରି, ନୀଳଗିରିନାଥ ଚକାଡୋଳାଙ୍କୁ ଅନାଇଁ ।

ସେ ହେଉଛନ୍ତି ଷୋଡ଼ଶଶ ଖ୍ରୀଷ୍ଟାବ୍ଦର କଥା । ସେକାଳରେ ଭାରତ ସମ୍ରାଟ ଆକବର ରାଜତ୍ୱ କରୁଥାଆନ୍ତି । ତାଙ୍କର ପ୍ରବଳ ପ୍ରତାପରେ ଭାରତର ବୀର ପୁରୁଷମାନେ ଚମକି ପଡ଼ୁଥାଆନ୍ତି । ବହୁ ଆଫଗାନ ସର୍ଦ୍ଦାର ଯୁଦ୍ଧ କରି ବଶ୍ୟତା ସ୍ୱୀକାର କରିବା ଛଡ଼ା ଅନ୍ୟ ଉପାୟ ନ ଥାଏ । ହେଲେ ଅଫଗାନ ସର୍ଦ୍ଦାର କୁତ୍ଲୁ ଖାଁଙ୍କ ପୁଅମାନେ ଦିଲ୍ଲୀଶ୍ୱରଙ୍କର ଅଧୀନ ନ ହୋଇ ଓଡ଼ିଶା ରାଜା ପ୍ରଥମ ରାମଚନ୍ଦ୍ର ଦେବଙ୍କର ଶରଣ ପଶିଥାଆନ୍ତି । ଦିଲ୍ଲୀ ସମ୍ରାଟ ଏ କଥା ଅବା ସହିବେ କିପରି ? ଅମିତ ଶକ୍ତିଶାଳୀ ମୋଗଲ ସାମ୍ରାଜ୍ୟର ସେନାପତି ରାଜା ମାନସିଂହ ଆସିଲେ ଓଡ଼ିଶା ରାଜାଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ । ସେହି ସମୟରେ ମାନସିଂହଙ୍କ ସାମରିକ ବାହିନୀରେ ଜଣେ ମୋଗଲ ବୀର ଥିଲେ ଜହାଙ୍ଗୀର କୁଲି ଖାଁ । ତାଙ୍କୁ ସମସ୍ତେ 'ଲାଲବେଗ' ବୋଲି ଡାକୁଥିଲେ ।

ଲାଲବେଗ ଦିନେ ଘୋଡ଼ା-ସବାର ସେନାର ନେତା ହିସାବରେ ଓଡ଼ିଆ ରାଜାଙ୍କ ବିରୁଦ୍ଧରେ ଅଭିଯାନ ଚଳାଇଥିଲେ । ଯୁଦ୍ଧ ଅଭିଯାନ କାଳରେ ସଡ଼କ ପାଖ ଗାଁ ଗୁଡ଼ିକ ଖାଲି ହୋଇ ଯାଉଥିଲା । ଲୋକେ ପ୍ରାଣଭୟରେ ଅନ୍ୟତ୍ର ଆଶ୍ରୟ ନେଉଥିଲେ । ଦିନେ ଅଭିଯାନ କାଳରେ ମୋଗଲ ସେନାପତି ଲାଲବେଗ ପୁରୀ ପିପିଲି ପାଖ ଦାଣ୍ଡମୁକୁନ୍ଦପୁର-ଶାସନର ଗ୍ରାମ ପଥରେ ଗୋଟିଏ ସୁନ୍ଦରୀ ସ୍ତ୍ରୀଲୋକଙ୍କୁ ଅଚାନକ ଦେଖିବାକୁ ପାଇଲେ । ବିଚାରୀ ଗାଁ ଲୋକଙ୍କ ସହିତ ଦଉଡ଼ି ପଳାଇ ପାରି ନ ଥିଲେ । କୌଣସି ଗୋପନ ସ୍ଥାନରୁ ମୋଗଲ ବୀରପୁରୁଷ ଏହି ସୁନ୍ଦରୀଙ୍କୁ ଧରି ନେଇଗଲେ । ସେ ଥିଲେ ବିଧବା ବ୍ରାହ୍ମଣୀ । ମୋଗଲ ବୀରପୁରୁଷ ତାଙ୍କୁ ପତ୍ନୀ ଭାବରେ ଗ୍ରହଣ କଲେ । ଯବନର ସ୍ତ୍ରୀ ହେଲେ ବି ହିନ୍ଦୁ ଆଚାର ବିଚାର ନେଇ ଚଳିବା ପାଇଁ ସେ ପୂର୍ଣ୍ଣ ସ୍ୱାଧୀନତା ପାଇଥିଲେ । ଏହି ଲାଲବେଗଙ୍କ ହିନ୍ଦୁ ପତ୍ନୀ ଗର୍ଭରୁ ଜନ୍ମଗ୍ରହଣ କରିଥିଲେ ଆମର ଭକ୍ତକବି 'ସାଲବେଗ' ।

ସେଥିପାଇଁ ସାଲବେଗ ନିଜେ କହିଯାଇଛନ୍ତି—"ପିତା ମୋ ମୋଗଲ ବେଟା, ମାତା ମୋ ବ୍ରାହ୍ମଣୀ !"

ସାଲବେଗ ଥିଲେ ବୀର ପିତାର ସନ୍ତାନ । ପିଲାଦିନୁ ଯୁଦ୍ଧ ବିଦ୍ୟାରେ ନିପୁଣ ହୋଇଉଠିଲେ । ସେନାବାହିନୀରେ ନାଁ ଲେଖାଇ ବହୁ ଯୁଦ୍ଧରେ ବୀରପଣିଆ ପ୍ରମାଣ କଲେ । ପୁଅର ଗୌରବରେ ପିତା ଲାଲବେଗ ସନ୍ତୋଷ ଲାଭ କରୁଥାନ୍ତି ।

ସବୁଦିନ ତ ସମାନ ରହେନାହିଁ । ମୋଗଲ ବୀରପୁରୁଷ ଲାଲବେଗ କର୍ତ୍ତବ୍ୟର ଆହ୍ୱାନରେ ଅନ୍ୟ ଅଞ୍ଚଳକୁ ବଦଳି ହୋଇଗଲେ । ସେତେବେଳେ ସେ ଆଉ ତାଙ୍କର ହିନ୍ଦୁ ସ୍ତ୍ରୀଙ୍କୁ ସାଙ୍ଗରେ ନେଲେ ନାହିଁ । ହତଭାଗିନୀ ସ୍ୱାମୀ ଛାଡ଼ି ଅତି ଦୁଃଖରେ ଜଗନ୍ନାଥଙ୍କୁ ସ୍ମରଣ କରି ଦିନ କାଟୁଥାନ୍ତି ।

ଓଡ଼ିଆ 'ଦାର୍ଢ୍ୟତା-ଭକ୍ତି' ବହିରେ ସାଲବେଗଙ୍କ ମାଆ କହିଛନ୍ତି—

"ମୋ କଥା ଶୁଣସିରେ ବାପ,
ଏ ଯେ ତୋହର ନିଜ ବାପ !
ତୋତେ ପାଶୋରି ସବୁକାଳେ
ତା' ନିଜ ସୁତ, ଦାରା, ମେଳେ ।
ରହିଲି ଅନାଥା ହୋଇଣ,
ମୁଁ ସିନା ହେଲି ଅକାରଣ !"

ଆଜି ପର୍ଯ୍ୟନ୍ତ ନିଜର ପିତାଙ୍କ ପ୍ରତି ଯେତିକି ମୋହ ଥିଲା, ମା'ଙ୍କର ଦୁଃଖମୟ ଜୀବନ କଥା ଶୁଣି ସାଲବେଗଙ୍କର ତାହା ସବୁ ତୁଟିଗଲା । ପିଲାଦିନୁ ମା' ତାଙ୍କର ଭକ୍ତିପରାୟଣା ଥିଲେ । ମାଆଙ୍କ ପାଖରେ ବସି ସେ କେତେ ପୁରାଣ-କଥା ଶୁଣିଥିଲେ, ଜଗନ୍ନାଥଙ୍କର ବନ୍ଦନା ଗାଇ ମା' କାନ୍ଦିବାର ଦେଖୁଥିଲେ । ତେବେ ଏ ସବୁ ତାଙ୍କର ସୈନିକ ପ୍ରାଣକୁ ଆଦୌ ଛୁଇଁ ନ ଥିଲା ।

କୌଣସି ଏକ ରଣଗୋଳରେ ସାଲବେଗ ଭୀଷଣ ଭାବରେ ଆହତ ହୋଇ ଶେଯ ଧରିଲେ । କେହି କବିରାଜ ଭଲ କରିପାରିଲେ ନାହିଁ । ସମସ୍ତେ ଜୀବନର ଆଶ ଛାଡ଼ି ଦେଇଥାନ୍ତି । ଭକ୍ତିପରାୟଣା ମା’ କେବଳ ପୁଅର ମଙ୍ଗଳ ପାଇଁ ‘ଗୁରୁଣ୍ଡି ଗୋପାଳ’ଙ୍କୁ ଦିନରାତି ପୂଜା କରୁଥାଆନ୍ତି—ପୁଅକୁ କହୁଥାନ୍ତି, “ତୁ ଜଗନ୍ନାଥଙ୍କର ଶରଣ ପଶ, ନିଶ୍ଚୟ ଭଲ ହୋଇଯିବୁ ।”

ସତକୁ ସତ ମନ୍ତ୍ର କାଟୁ କଲାପରି ମା’ଙ୍କର ପ୍ରାର୍ଥନା ଠାକୁର ଶୁଣିଲେ ପରା । ସାଲବେଗ ଆରୋଗ୍ୟ ହୋଇଗଲେ । ତାଙ୍କର ନିଷ୍ଠୁର ସୈନିକ ହୃଦୟ ତରଳିଗଲା । ସେ ମା’ଙ୍କର ଠାକୁର ଗୋପାଳଙ୍କୁ ଭକ୍ତି କରିବାକୁ ଲାଗିଲେ । ‘ନୀଳଗିରି-ନାଥ’ ଜଗନ୍ନାଥଙ୍କୁ ଭଜନ କଲେ ।

ସାମାଜିକ ରୀତି ଅନୁସାରେ ବଡ଼ଦେଉଳରେ ତାଙ୍କର ପ୍ରବେଶ ଅଧିକାର ନ ଥିଲା । ଲୋକେ ତାଙ୍କୁ ଯବନ ବୋଲି ଏଡ଼େଇ ଚଳୁଥିଲେ; କିନ୍ତୁ ତାଙ୍କର ଭକ୍ତପ୍ରାଣ ଏହି ଅନ୍ଧ ବିଶ୍ୱାସକୁ ଭ୍ରୂକ୍ଷେପ କରୁ ନ ଥିଲା । ସେ ଜାଣିଥିଲେ, ତାଙ୍କର ଶୂନ୍ୟ କୁଡ଼ିଆରେ ଯଦି ଭଗବାନ ଡାକ ଶୁଣି ତାଙ୍କୁ ଏଡ଼େବଡ଼ ରୋଗରୁ ଆରୋଗ୍ୟ କରିଦେଲେ, ତେବେ ମନ୍ଦିର ମସଜିଦ ଯାଇ ଲାଭ କଅଣ ? ପ୍ରଭୁ ସବୁଠାରେ ଅଛନ୍ତି, ସେ ସମସ୍ତଙ୍କର । ଯିଏ ତାଙ୍କୁ ମନ ନିର୍ମଳ କରି ବିଶ୍ୱାସର ସହିତ ଡାକିବ, ସେ ତା’ର ହୋଇଯିବେ ଗୋଟାକଯାକ ଆପଣାର ।

ସେହିଦିନୁ ତାଙ୍କର ତୁଣ୍ଡରୁ ଅସୁମାରି ଭକ୍ତି-ସଙ୍ଗୀତ ଝରି ପଡ଼ିଲା । ଭାରତର ଚାରିଆଡ଼େ ଲୋକେ ସାଲବେଗଙ୍କ ଭଜନ ଗାଇ ଆତ୍ମହରା ହେଲେ ।

କୌଣସି ଭୌଗୋଳିକ ସୀମା, ଭାଷାର ବାଡ଼-ବତା, ଧର୍ମର ଅଭିମାନ ସାଲବେଗଙ୍କ ଭକ୍ତିଭଜନକୁ ଅଟକାଇ ପାରିଲା ନାହିଁ । ସେ ହୋଇଛନ୍ତି ଭାରତର ଜଣେ ପରମ ଭକ୍ତକବି ।



# ସୁନାଚଢ଼େଇ, ସୁନାମଣିଷ

# ଅମୃତଫଳ

## ଶ୍ରୀ ରଘୁନାଥ ରାଉତ

ଗୋଟିଏ ରାଇଜ ଥାଏ । ସେ ରାଇଜର ଲୋକମାନେ ଯିମିତି ଲୋଭୀ, ସିମିତି ଅଳସୁଆ । ସେମାନେ ମନରେ ସଦାବେଳେ ଭାବୁଥାନ୍ତି —ତାଙ୍କ ଘର ଖାଲି ଗଦାଗଦା ସୁନାରେ ଭରିଯାଆନ୍ତା କି !

ସୁନା ପ୍ରତି ମନରେ ସିନା ଏତେ ଲୋଭ, ହେଲେ ସେ' ରାଇଜରେ ରତିଏ ବେ ଲି ସୁନା ନ ଥାଏ ।

ଥରେ କାହୁଁ ଆସି ସେ' ରାଇଜରେ ଗୋଟିଏ ସୁନାଚଢ଼େଇ ପହଞ୍ଚିଲା ।

ଚଢ଼େଇଟି ତା'ର ବନହଳଦ ପରି ଭାରି ସୁନ୍ଦର । ଦେଖିଲେ ଆଖି ଝଲସି ଯିବ ! ସୁନା ଡେଣା ଦୁଇଟିକୁ ପହଁରେଇ ପହଁରେଇ ସେ ଯେତେ ବେଳେ ଏ ଗଛରୁ ସେ ଗଛକୁ ଡେଇଁ ଡେଇଁ ଗୀତ ଗାଇଲା—ସେ' ରାଇଜର ଲୋକମାନେ ତାକୁ ଦେଖି ଅବାକ୍ ହୋଇଗଲେ । ଧରିବା ପାଇଁ ନାନା ଫନ୍ଦି ଫିକର କଲେ; ମାତ୍ର ସୁନା ଚଢ଼େଇଟି ଭାଆରି ଚତୁର । ସେ ଜାଣିପାରିଲା ଲୋକଗୁଡ଼ାକ ଏତେ ସୁନା ଲୋଭୀ ଯେ—ତାକୁ ହାତରେ ପାଇଲେ ମାରିଦେଇ ପାରନ୍ତି । ତେଣୁ କିଛି ଦିନପାଇଁ ମନରେ କଅଣ ଭାବି, ସେ ରାଇଜ ଛାଡ଼ି ଅନ୍ୟ କୁଆଡ଼େ ଉଡ଼ିଗଲା ।

ଲୋଖିଲୋକେ ତାକୁ ବହୁତ ଖୋଜି ଖୋଜି ଥକିଲେ ।

ଦିନକର କଥା । ରାତି ପାହି ସକାଳ ହେଲା । ଶୁଭସକାଳର ନୂଆ ନୂଆ ଖରା, ସୁନା ମିଶାଗ ପରି ଝରଆଡ଼େ ଢେଉଁ ଢେଉଁ ଝଟୁଡ଼-ହୋଇ ପଡ଼ିଲା । ସେଇଷ୍ଟି ସମୟରେ କୁଆଡ଼େ ଥଣ୍ଟରେ ଗୋଟିଏ ସୁନାଫଳ ଧରି ସୁନା ଚଢ଼େଇଟି ଗୁଞ୍ଜଣି ଆସି ସେ ରାଇଜରେ ଦେଖାଦେଲା । ଏ ଦୁଆର ସେ ଦୁଆର ବୁଲି ମଧୁର ସ୍ୱରରେ ଗାଇ ଗାଇ ବୁଲିଲା—

ସୁନା ଚଢ଼େଇ ମୁଁ ସୁନା ଚଢ଼େଇ
ସୁନା ଦେହୁଁ ମୋର ପର ଝଡ଼େଇ
ସୁନା ଗଛ ଡାଳେ ଥାଏ
ସୁନା ଲୋକ ଦେଖି ସୁନା ଫଳଟିକୁ
ଯାଚି ଦେବି ବୋଲି ଗାଏ···

ସୁନା ଚଢ଼େଇର ଏ ଗୀତ ଶୁଣି ସେ ଦେଶର ଲୋକମାନଙ୍କ ମଧ୍ୟରେ ପ୍ରତିଯୋଗିତା ଲାଗିଲା । ସମସ୍ତେ ଭଲ କାମର ବାହାନା କରି ଭାବିଲେ ସୁନା ମଣିଷ ହୋଇ ସୁନା ଫଳଟିକୁ କିମିତି ପାଇବେ ! "ମୁଁ ସୁନାମଣିଷ" "ମୁଁ ଭଲମଣିଷ" କହି ସେ ସୁନାଫଳଟିକୁ ଦେବାକୁ ସଭିଏଁ ତାକୁ ଅନୁରୋଧ କଲେ ! ଆଉ, ସମସ୍ତେ ନିଜ ନିଜ ଭିତରେ କଳି କଜିଆ କରି ତା' ଠାରୁ ସୁନାଫଳଟିକୁ ପାଇବାକୁ ଦଳଦଳ ହୋଇ ତା' ପଛରେ ଧାଇଁଲେ ।

ସୁନା ଚଢ଼େଇ ଫଳଟିକୁ ଧରି ଡାଳୁଁ ଡାଳ ଉଡ଼ି ବୁଲୁଥାଏ । ତା' ଆଖିକୁ କେହି ଜଣେ ହେଲେ ବି ଭଲ ମଣିଷ ସେ ରାଇଜରେ ଦେଖାଯାଉ ନଥାନ୍ତି ।

ହଠାତ୍ ସେ ଉଡ଼ୁ ଉଡ଼ୁ ଦେଖିଲା···ବଇଶାଖ ମାସର ଡହଡହ ଖରାରେ ଅଶୀଆ ବରଷର ମସିହା ବୁଢ଼ା ଲୋକଟିଏ ଝାଳନାଳ ହୋଇ କୋଦାଳ ଧରି କ୍ଷେତ କାମ କରୁଛି । ସେ ତା' ପାଖରେ ଥିବା ଗୋଟିଏ ଥୁଣ୍ଟାଗଛ ଡାଳରେ ବସି ତା'ର ପ୍ରିୟ ଗୀତଟିକୁ ମନ ମତାଣିଆ ସ୍ୱରରେ ମଣିଷପରି ଗାଇବାକୁ ଲାଗିଲା—

ସୁନା ଚଢ଼େଇ ମୁଁ ସୁନା ଚଢ଼େଇ
ସୁନା ଚଞ୍ଚୁ ମୋର ହଏ ବଢ଼େଇ
ସୁନା ସପନରେ ଝୁଲି ଝୁଲିକା
ସୁନା ନଈ ପାଣି ପିଏ
ସୁନା ଲୋକ ଦେଖି ସୁନା ଫଳଟିକୁ
ଯାଚଦେବ ବୋଲି ଗାଏ ।

ସୁନା ଚଢ଼େଇ ଏଇପରି ଗୀତଟିକୁ କେତେଥର ଗାଇଲା; ମାତ୍ର ସେ ବୁଢ଼ାଟି ଥରକ ପାଇଁ ବି ତା ଆଡ଼କୁ ନଜର ନ ଦେଇ ତା' କାମରେ ଲାଗିଥାଏ । ସୁନା ପାଇଁ ବୁଢ଼ା ମନରେ ଟିକେ ହେଲେ ଆତୁରତା ନ ଦେଖି ସୁନା ଚଢ଼େଇଟି ଆଶ୍ଚର୍ଯ୍ୟ ହେଲା । ପାଖକୁ ଯାଇ କହିଲା—"ଓଳଗି ଅଜା ! ଗୋଟିଏ ମୁହୂର୍ତ୍ତ ପାଇଁ କାମ ବନ୍ଦ କରି ଟିକେ ମୋ କଥା ଶୁଣିବ କି ?"

ବୁଢ଼ା ଅଣ୍ଟା ସଳଖି ତା' ଆଡ଼କୁ ଚାହିଁ କହିଲା—"କ'ଣ କହୁଚୁ ବେଗି ବେଗି କହ, ମୋର ବେଳ ଯାଉଛି ।"

ସୁନା ଚଢ଼େଇ ଚୁନା ଚୁନା ପର କେତୋଟି ଝାଡ଼ିଦେଇ କହିଲା —"ଅଜା ମ ! ତୁମେ କ'ଣ ମୋ ଆସିବା ଖବର ପାଇନ ? ଏ ସୁନାଫଳ କଥା କିଛି ହେଲେ ଜାଣିନ ?"

ବୁଢ଼ା ତା' ଖାକୁଆ ପାଟିରେ ଲୁଖୁରା ହସ ଟିକିଏ ହସୁ ହସୁ କହିଲା—"ଜାଣିନ, କ'ଣ ? ସବୁ ଜାଣିଛି । ହେଲେ ସେ ଫଳ ପାଇଁ ମୋର ଲୋଭ ନାହିଁ । ଏଇ କ୍ଷେତରେ ଖଟି ଫିଇସନ ମୁଁ ସୁନା ଫଳାଉଛି । ସୁନା ଅମଳ କରୁଛି । ମୋର ଭାରିଯା, ମୋର ପିଲାପିଲି ତାକୁ ଖାଇ ମହାଆନନ୍ଦରେ ଅଛନ୍ତି । ଏହାଠାରୁ ସେ ସୁନାଫଳ କ'ଣ ଏତେ ବେଶି ମୂଲ୍ୟର ?"

ବୁଢ଼ାର ଏଇ ମିଠା କଥା ଦି' ପଦ ଶୁଣି ସୁନା ଚଢ଼େଇଟି ଭାରି ଖୁସି ହୋଇଗଲା । ବୁଢ଼ାକୁ ଆଉ କିଛି ନ କହି ସେ ସୁନାଫଳଟିକୁ ବୁଢ଼ା ପାଖକୁ ପକାଇ ଦେଇ କୁଆଡ଼େ ନାଇଁ କୁଆଡ଼େ ଅଦୃଶ୍ୟ ହୋଇଗଲା ।

ବୁଢ଼ା ମହା ଅଡୁଆରେ ପଡ଼ିଲା । ସେ ଭାବିଲା—"ମୋର ତ ଖାଇବାପିଇବାରେ ଅଭାବ ନାହିଁ । ମୁଁ ଯେତିକିରେ ଅଛି, ସେତିକି ରହିବା ଛଡ଼ା ମୋର ତ ଅଧିକା ଧନୀ ହେବାର ଲୋଭ ନାହିଁ । ଯଦି ବା, ଏ ସୁନାଫଳ ବିକି ମୁଁ ବଡ଼ ଧନୀ ହୁଏ, ତାହେଲେ, ଲାଭ ବା କଅଣ ? ଗାଁଟାରେ ଏତେ ଲୋକ ଗରିବ ହୋଇ ଥାଉଁ ଥାଉଁ ମୁଁ ଏକା ବା ଧନୀ ହେବି କାହିଁକି ? ନା ! ଗୋଟିଏ କଥା କରିବି । ଏ ଫଳଟିକୁ ମାଟିରେ ପୋତି ପକାଇବି । ଗଛହେଲେ ସେଥିରେ ଅନେକ ସୁନାଫଳ ଫଳିବ । ମୁଁ ଧନୀହେବା ସଙ୍ଗେ ସଙ୍ଗେ ଗାଁଟାଯାକର ଲୋକ ବି ଧନୀ ହୋଇଯିବେ ।"

ଇମିତି ଭାବି ବୁଢ଼ା ମାଟି ଖୋଳି ସୁନାଫଳଟିକୁ ପୋତି ପକାଇଲା । କିଛି ଦିନ ପରେ ସେଥିରେ ସୁନା ଚେଙ୍ଗା ବାହାରି ସୁନା ଗଛ ହେଲା । ସୁନା ପତର, ସୁନା ଫୁଲ, ସୁନା ଫଳରେ ଗଛଟି ଭରି ଉଠିଲା । ସେ' ଗାଁଟାରେ ଯିଏ ଇଚ୍ଛାକଲା···ସେ ଗଛରୁ ସୁନା ଫଳ ତୋଳି ନେଇ ଗଦାକରିବାକୁ ଲାଗିଲେ । କିଛିଦିନ ପରେ ସେ ଗାଁଟାରେ ଏତେ ସୁନା ହୋଇଗଲା ଯେ ସବୁ ଲୋକ ମହାମହା ଧନୀ ହୋଇଗଲେ ! ସମସ୍ତେ ବୁଢ଼ାକୁ ପ୍ରଶଂସା କରିବାକୁ ଲାଗିଲେ । ଗାଁଟାର ନାଆଁ ରଖିଲେ— 'ସୁନାଗାଁଟା'

ସୁନାଗାଁଟାରେ ଘରକରି ବୁଢ଼ା ମନରେ କିନ୍ତୁ ଠିକ୍ ହେଲେ ସୁଖ ନଥାଏ । ସେ କାହାରି ପ୍ରଶଂସାକୁ କାନ ନଦେଇ ମନେ ମନେ ଖାଲି ସୁନାଚଢ଼େଇ କୁ ଖୋଜି ହେଉଥାଏ । ତା' ଲାଗି ଆଜି ଗାଁଟା-ଯାକ ଲୋକ ଧନୀ ହୋଇଛନ୍ତି— ଏକଥା ଭାବିଲାବେଳକୁ ବୁଢ଼ାର ମନ କୁଣ୍ଢେ ମୋଟ ହୋଇ ଯାଉଥାଏ । ତା'ର ମନ କହୁଥାଏ ଯଦି ସେ ଏପରି ଉପକାରୀ ଚଢ଼େଇଟିକୁ ଆଉ ଥରେ ଦେଖନ୍ତା, ତାକୁ ସେ ଫୁଲ ଚନ୍ଦନ ଦେଇ ପୂଜା କରନ୍ତା । ମହାପ୍ରସାଦ ଦେଇ ସେବା କରନ୍ତା । ଖାଇବାକୁ ଦିଅନ୍ତା ମିଠାମିଠା ଫଳ । ନିଜ ହାତରେ ମହୁଗୋଳା କ୍ଷୀର ପିଆଇ ଦିଅନ୍ତା !

ଦିନେ ସକାଳୁ ସକାଳୁ ସତ ବୁଢ଼ାର ମନକଥା ଜାଣି କି-କ'ଣ କାହୁଁ ଆସି ପୁଣି ସୁନାଚଢ଼େଇଟି ସେ ଗାଁଟାରେ ପହଞ୍ଚିଲା । ଏଥର ସେ

ଦେଖି···ଚକିତ ହେଲା ଯେ, କେହିହେଲେ ତା, ଆଡ଼କୁ ଥରକ ପାଇଁ ଆଖି ଫେରାଇ ଚାହୁଁ ନାହାନ୍ତି । କେବଳ ସେ ଥୁରୁଥୁରୁ ବୁଢ଼ାଟି ଏକ ଲୟରେ ତା'ର ବାଟ ଚାହିଁ ବସିଛି । ସେ ବୁଢ଼ା ପାଖକୁ ଯାଇ ଓଳଗି ହୋଇ କହିଲା-"ଅଜା ! କ'ଣ ସବୁ ଭଲ ତ ?"

ସୁନାଚଢ଼େଇକୁ ଦେଖି ବୁଢ଼ାକୁ ସତେ କି ହାତ ପାଆନ୍ତାରେ ସରଗ ଚାନ୍ଦ ମିଳିଲା । ଦେଖି ଦେଖି ସେ ତାଙ୍କୁ ଆଦର କରି ପାଖରେ ବସାଇଲା । ଗେହ୍ଲାଦେଇ କହିଲା—"ସବୁ ଭଲରେ ! ପଡ଼ୋଶୀଯାକ ସୁଖରେ ଅଛନ୍ତି । ସକଳେ ମିଳିମିଶି ହସ ଖୁସିରେ ଜୀବନ ବିତାଉଛନ୍ତି ! ତାଙ୍କୁ ଦେଖି ମୁଁ ବେଶ୍ ଖୁସିରେ ଅଛି । ତେବେ ଗୋଟିଏ କଥା ମୋ ଆଖିରୁ ନିଦ କାଢ଼ି ନେଇଛି । ସେଥିଲାଗି ମୋ ମନରେ ଭାରି କଷ୍ଟ ! ମତେ କହିବନି ?"

ସୁନାଚଢ଼େଇ କହିଲା—"କ'ଣ ସେ ?"

ବୁଢ଼ା କହିଲା—"ମୁଁ ବୁଢ଼ା ହୋଇଗଲିଣି ଆଉ କାମକୁ ପାରୁନି । ବସିବସି ପର ଅରଜିଲା ଧନକୁ ଅସୁର ପରି ଖାଇବାକୁ ମତେ ଆଉ ଭଲ ଲାଗୁନି !

ସୁନାଚଢ଼େଇ ଫିକ୍ କରି ହସିଦେଇ କହିଲା—"ଓଃ ବୁଝିଲି ! ଏଥର ତେବେ ତୁମେ ମରିବାକୁ ଚାହୁଁଛ ? ଆଚ୍ଛା···ମୁଁ ଆସୁଛି ।" ଏହା କହି ସୁନାଚଢ଼େଇଟି ଫୁର୍ରକିନା ଉଡ଼ିଗଲା !

କିଛି ସମୟ ପରେ ଗୋଟାଏ ନାଲି ଟହଟହ ଫଳ ଥଣ୍ଟରେ ଧରି ଆସି ପହଞ୍ଚିଲା । କହିଲା—"ନିଅ, ଇଏ ହେଉଛି ବିଷଫଳ । ଯାହାକୁ ଖାଇ ଦେଲେ ଆଦୌ କଷ୍ଟ ଅନୁଭବ ନ କରି ତୁମେ ସଙ୍ଗେ ସଙ୍ଗେ ମରିଯିବ ।"

ଏହାକହି ଫଳଟିକୁ ବୁଢ଼ା ହାତରେ ଧରାଇଦେଇ ସୁନାଚଢ଼େଇଟି ପୁଣି କୁଆଡ଼େ ଉଭାନ୍ ହୋଇଗଲା । ବୁଢ଼ା ଏଥର ମନ ଖୁସିରେ ଫଳଟିକୁ ଖାଇଦେଲା; ମାତ୍ର ଏ କ'ଣ ? କିଛି ସମୟ ପରେ ଦେଖିଲା ବେଳକୁ ସେ ନ ମରି ଆଶ୍ଚର୍ଯ୍ୟଭାବେ ବଦଳି ଯାଇଛି । ସେ ହୋଇଛି

କେଡ଼ଏ ଏକୋଇଶ ବର୍ଷର ଗୋଟିଏ ଗଜା ଟୋକା । ବାହାରେ ତା'ର କାମ କରିବାକୁ ବେଜାଏ ବଳ ! ସୁନା ଚଢ଼େଇଟି ତାଙ୍କୁ ବିଷଫଳ ନାଆଁରେ ଭୁଲାଇ ପ୍ରକୃତରେ ଅମୃତ ଫଳଟିଏ ଖାଇବାକୁ ଦେଇ ଯାଇଛି !

ବୁଢ଼ା ଯୁବକ ହୋଇଯିବାର ଶୁଣି ରାଇଜଯାକର ଲୋକ ତାକୁ ଦେଖିବାକୁ ଧାଇଁ ଆସିଲେ । ସମସ୍ତେ ଚିନ୍ତା କରିବାକୁ ଲାଗିଲେ । ତାଙ୍କର ଆଖି ଫିଟିଗଲା ଚେତା ପଶିଲା । ସୁନାଚଢ଼େଇ କାହିଁକି ବୁଢ଼ାକୁ ସୁନା-ଫଳ ଦେଇଥିଲା' ପୁଣି ବୁଢ଼ାକୁ ଟୋକା କରି ଦେଇଗଲା, ସବୁ ବୁଝିଲେ । ଲୋଭ ତାଙ୍କ ମନରୁ ଦୂରେଇଗଲା ! ଏଣିକି ସେମାନେ ଦେହ ମେହନତ କରି ରୋଜଗାର କରିବାକୁ ଲାଗିଲେ । ପରସ୍ପରର ହିତ ଚାହିଁବାକୁ ଲାଗିଲେ । କାହାରିକୁ ଠକି ଭଣ୍ଡେଇ ଖାଇଲେ ନାହିଁ । କାହାରି ମନରେ ପୀଡ଼ା ଦେଲେ ନାହିଁ । ନିଜ ନିଜ ଭିତରେ କଳି କଜିଆ କରି ଶାନ୍ତି ନଷ୍ଟ କଲେ ନାହିଁ । ନିଜେ ବଞ୍ଚି ରହିଲେ । ଅନ୍ୟକୁ ବଞ୍ଚିବା ପାଇଁ ବଢ଼ିବା ପାଇଁ ମଧ୍ୟ ସୁଯୋଗ ଦେଲେ । ସେ ରାଇଜଟା ହେଲା ଗୋଟିଏ ପରିବାର । ବର୍ଣ୍ଣି ବାଣ୍ଟି ସୁଖଶାନ୍ତି ସେଠି ତଥାପି ବଳି ପଡ଼ିଲା ।



# ମଣିଷ ହିଁ ସବୁଠୁ ବଡ଼

## ଡକ୍ଟର ଜଗନ୍ନାଥ ମହାନ୍ତି

ନେଳିଆ ପାହାଡ଼ ତଳ ଝାଙ୍ଗର ପଥର ଖଣ୍ଡକୁ ଭାଙ୍ଗି ଗୋଟ ଗୋଟ କରିବା ହେଉଛି ସଦେଇର କାମ । ବଡ଼ କଠିନ ସେଇ କାମ । ଖରା ତରା, ଶୀତ କାକର ଆଉ ଝଡ଼ବର୍ଷାରେ ସେ ଏଇ କାମ କରେ ।

ସଦେଇକୁ ପଥର ଭାଙ୍ଗିବା କାର୍ଯ୍ୟ ଆଉ ଭଲଲାଗିଲା ନାହିଁ । ଦିନେ ସେ ପଥର ଭାଙ୍ଗି ଭାଙ୍ଗି ହାଲିଆ ହୋଇପଡ଼ିଲା ମନେ ମନେ ଭାବିଲା—ମୁଁ ଯଦି ଧନୀ ହୋଇଥାନ୍ତି, ଘରେ ଆରାମ କରନ୍ତି । ପଲଙ୍କରେ ଶୋଇ ଘୁଙ୍ଗୁଡ଼ି ମାରନ୍ତି ।

ଏଇ ସମୟରେ ଗୋଟିଏ ପରୀ ଆକାଶରୁ ଓହ୍ଲାଇ ଆସି କହିଲା—ଯାହା ଚାହୁଁଛ, ତାହା ହିଁ ହେଉ ।

ସତକୁ ସତ ସଦେଇ ଜଣେ ବଡ଼ ଧନୀ ମହାଜନ ହୋଇଗଲା । ପଥର କାଟିବା କାମ ଛାଡ଼ି ସେ ବହଳ ଗଦିରେ ବସିଲା । ହଂସତୁଳ ଶେଯରେ ଶୋଇଲା ।

ଦିନେ ସେଇ ଦେଶର ରାଜା ସୁନ୍ଦର ରଥଟିରେ ବସି କେତେ ଦାମିକା ପୋଷାକ ପିନ୍ଧି ଖୁବ୍ ସଳଖଣରେ ସେଇ ବାଟରେ ଯାଉଥିଲେ । ବାଣ, ରୋଷଣି, ଗୀତ, ବାଜା, ଗହଳ ଚହଳରେ ସଦେଇର ନିଦ ଭାଙ୍ଗିଗଲା । ସେ ରାଜାଙ୍କର ଏ ଆଡ଼ମ୍ବର ଦେଖି ଭାରି ହାଇଁ ପାଇଁ ହେଲା । ମନେ ମନେ ଭାବିଲା—ମୁଁ ଏମିତି ରାଜାଟିଏ ହୁଅନ୍ତି କି !

ଶୂନ୍ୟରୁ ପଖଟିଏ ଓହ୍ଲାଇ ଆସି ସପେଇକୁ କହିଲା—ଯାହା ଚାହୁଁଚ, ତାହା ହିଁ ହେଉ ।

ସତକୁ ସତ ସପେଇ ଜଣେ ରଜା ହୋଇଗଲା । ରାଜରାସ୍ତାରେ ଚାଲିଲା ତା'ର ରଥ । ବରାଟ ପଟୁଆର ଆଉ ଯାକଜମକରେ ରାଜ୍ୟପାଟ୍ଟ କଲା ।

ଥରେ ଆକାଶର ରଜା ସୂର୍ଯ୍ୟଙ୍କର ଉଜ୍ଜ୍ୱଳ କିରଣ ଝରି ପଡୁଥିଲା । ସତେ ଯେମିତି ତାଙ୍କର ସୁନାର କିରଣ ଏଇ ରଜାଙ୍କର ଆଡମ୍ବରକୁ ଥଟ୍ଟା କରୁଥିଲା । ରଜାଙ୍କର ଦେହ ଉପରେ ସୂର୍ଯ୍ୟଙ୍କର କିରଣ ପଡ଼ିଲା । କ୍ରମେ ତତଲା ଖରା ତାଙ୍କ ଦେହକୁ ତତାଇ ଦେଲା । ରଜା ବିରକ୍ତ ହୋଇ ପଡ଼ିଲେ । ମନେ ମନେ ଭାବିଲେ—ମୁଁ ଆକାଶର ରଜା ହୁଅନ୍ତି କି !

ହଠାତ୍ ଆକାଶରୁ ଓହ୍ଲାଇ ପଖଟି କହିଲା—ଯାହା ଚାହୁଁଚ, ତାହ ହିଁ ହେଉ ।

ସତକୁ ସତ ରଜା ସୂର୍ଯ୍ୟରେ ପରିଣତ ହୋଇଗଲେ । ଉଚ୍ଚ ଆକାଶରେ ଉଜ୍ଜ୍ୱଳ କିରଣ ବର୍ଷି ହୋଇପଡ଼ିଲା । ତତଲା କିରଣରେ ଗଛଲତା, ଜୀବଜନ୍ତୁ ହାହାକାର କରି ଉଠିଲେ ।

ଏହି ସମୟରେ ଗୋଟିଏ କଳା ବଉଦ ଆକାଶରେ ଦେଖାଦେଲା । ସୂର୍ଯ୍ୟ ସତେ ଯେମିତି ତାର କଳା ପଣତରେ ଲୁଚିଗଲା । ତାକୁ ବଡ଼ ଅପମାନ ଲାଗିଲା । ଆକାଶର ରଜା ପୁଣି ଖଣ୍ଡେ ବଉଦରେ ଲୁଚିଲା । ଭାରି ଅଶାନ୍ତ ଲାଗିଲା । ସେ ଭାବିଲା—ମୁଁ ଗୋଟିଏ ବଉଦ ହୁଅନ୍ତି କି ! ମଜାରେ ପକ୍ଷୀଟିଏ ପରି ଉଡ଼ି ବୁଲନ୍ତି ।

ଆକାଶରୁ ଓହ୍ଲାଇ ଆସି ପଖଟିଏ ଜଣାଇଦେଲା—ଯାହା ଚାହୁଁଚ, ତାହା ହିଁ ହେଉ ।

ସତକୁ ସତ ସୂର୍ଯ୍ୟ ଖଣ୍ଡେ ମେଘ ହୋଇଗଲା । ନୀଳ ଆକାଶରେ ଦିନରାତି ଉଡ଼ି ବୁଲିଲା । ତା'ର ବର୍ଷାରେ ଶୁଖିଲା ପୃଥିବୀ ସବୁଜ ସୁନ୍ଦର ହୋଇ ହସି ଉଠିଲା ।

ମୂଷଳଧାରାରେ ବର୍ଷା ହୋଇ ନଈ ପୋଖରୀ ସବୁ ପୂରିଗଲା । ପାଣି ସୁଅରେ ଗଛଲତା, ଜୀବଜନ୍ତୁ ସବୁ ଭାସିଗଲେ, କିନ୍ତୁ ପାହାଡ଼, ପର୍ବତ ଅଚଳ ଅଟଳ ହୋଇ ମୁଣ୍ଡଟେକି ରହିଲେ । ତା ଦେହରେ ଅନେକ ପ୍ରାଣୀ ଆଶ୍ରା ନେଲେ ।

ଏ ସବୁ ଦେଖି ମେଘ ଭାରି ରାଗିଗଲା । ସେ ଭାବିଲା—ମୋ ଠାରୁ ତେବେ ପାହାଡ଼ ବଡ଼ । ସେ ଦୁଃଖରେ ଛାତି ଫଟାଇ କାନ୍ଦିଲା । ପାହାଡ଼ଟିଏ ହେବାକୁ ମନ କଲା ।

ଏହି ସମୟରେ ଆକାଶରୁ ପକ୍ଷୀଟିଏ ଓହ୍ଲାଇ ଆସି କହିଲା—ଯାହା ଚାହୁଁଚ ତାହା ହିଁ ହେଉ ।

ସତକୁ ସତ ମେଘ ବିରାଟ ପାହାଡ଼ଟିଏ ହୋଇଗଲା । ଦିନପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ବିତିଲା ।

ଦିନେ ଗୋଟିଏ ଲୋକ ଆସିଲା । ତାର ଧାରୁଆ ଖଣତି, କଟାରି ଆଉ ହାତୁଡ଼ି ଧରି ପାହାଡ଼ ଦେହକୁ କାଟି ଖଣ୍ଡ ଖଣ୍ଡ କରିବାରେ ଲାଗିଲା ।

ଏଥିରେ ପାହାଡ଼ର ମନ ବିକଳ ହୋଇ ଉଠିଲା । ତାର ସବୁ ଆଶା ଧୂଳିସାତ୍ ହେଲା । ସେ ଖୁବ ବ୍ୟସ୍ତ ହୋଇପଡ଼ି କହିଲା—ହାୟ ଭଗବାନ ! ମୋତେ ସେଇ ମଣିଷ କର । ମୁଁ ଯେମିତି ଝାଳବୁହା ପରିଶ୍ରମ କରି ସ୍ୱାଧୀନ ମଣିଷ ହୁଏ । ମୋର ଆଉ କିଛି ଲୋଡ଼ା ନାହିଁ ।

ସ୍ୱର୍ଗରୁ ପକ୍ଷୀଟି ଓହ୍ଲାଇ ଆସି କହିଲା—ତୁମେ ଯାହା ଚାହୁଁଚ, ତାହା ହିଁ ହେଉ ।

ଶେଷରେ ସେଇ ପାହାଡ଼ ମଣିଷ ହୋଇଗଲା । ସେଦିନଠାରୁ ପାହାଡ଼ କାଟିବାରେ ଲାଗିଲା । କଠିନ ପରିଶ୍ରମ କରି ମଧ୍ୟ ସେ ସୁଖୀ, ଆଉ ସବୁ ଜଞ୍ଜାଳ ଭିତରେ ବି ସେ ସ୍ୱାଧୀନ । ନିଜ ଜୀବନ ପାଇଁ ତାର ଆଉ କିଛି ଅଭିଯୋଗ ନାହିଁ । ସେ ବୁଝିଛି, ପୃଥିବୀରେ ମଣିଷ ହିଁ ସବୁଠୁ ବଡ଼ । ତାଠାରୁ ବଡ଼ ଆଉ କିଛି ନାହିଁ ।



# କାମ ଓ ସମ୍ମାନ

## ଡକ୍ଟର ମନୀନ୍ଦ୍ର ମହାନ୍ତି

ଧନେଶ ବିଖ୍ୟାତ ବ୍ୟବସାୟୀଙ୍କ ପୁଅ । ବୟସ—ବାରବର୍ଷ ! ବେଶ ଉଜ୍ଜଳ ଢଳ ଢଳ ଚେହେରା । ତା' ପୋଷାକ ଦେଖିଲେ ସ୍କୁଲର ଅନ୍ୟ ପିଲାମାନେ ତାକୁ ଫେରି ଚାହାନ୍ତି । ସ୍କୁଲକୁ ଆସିଲାବେଳେ ଆଉ ଫେରିଲାବେଳେ ତାଙ୍କ ଡ୍ରାଇଭର କାରରେ ଆଣି ଛାଡ଼ିଦେଇ ଯାଏ । ବସ୍ତାନି, ପାଣିବୋତଲ ଓ ଟିଫିନ୍‌କେଶଟା ଧରି ଡ୍ରାଇଭର ତା' ପଛେ ପଛେ ଆସି ସ୍କୁଲ ବାରଣ୍ଡାରେ ତାକୁ ଦେଇଯିବ । ସମସ୍ତେ ତାକୁ ଫେରି ଚାହାନ୍ତି । ସେ ଯେପରି ସ୍କୁଲର ଶହ ଶହ ପିଲାଙ୍କ ଭିତରେ ଜଣେ ନୁହେଁ । ସବୁ ପିଲାଏ ଭାବନ୍ତି ଧନେଶ୍ ଠାରୁ ସୁଖୀ ଆଉ କେହି ନାହାନ୍ତି । ସେ'ତ ପିଲାଦିନରୁ ସୁଖୀ ହୋଇଗଲାଣି । ଅନ୍ୟ ପିଲାମାନେ ବସ୍ତାନି, ପାଣି ବୋତଲ, ଟିଫିନ୍‌କେଶ ନିଜେ ବୋହିଥାଆନ୍ତି । ନିଜ ଭାଗ୍ୟକୁ ଅନ୍ୟମାନେ ନିନ୍ଦନ୍ତି ।

ଧନେଶର ବଡ଼ ସାଙ୍ଗ ହେଲା—ଲୁଲୁ । ତା' ବାପା ଅଫିସର ଜଣେ କିରାଣୀ । ସେ ଗରିବ ହେଲେ କଅଣ ହେବ, ଧନେଶ ପାଖରେ ସେ ନିଜକୁ କେବେ ଛୋଟ କରି ଦେଖେନାହିଁ । ମଝିରେ ମଝିରେ ସେ ଧନେଶକୁ ଡାକି କହେ—"ଆରେ ଧନେଶ ! ତୁ କଅଣ ନିଜେ ବସ୍ତାନି, ପାଣିବୋତଲ, ଟିଫିନ୍‌କେଶ ହାତରେ ଧରି ବୋହି ପାରିବୁ ନାହିଁ ? ତୋ ହାତରେ ଅକଣ ବଳ ନାହିଁ, ? ତୁ ନିଜେ ନିଜ କାମ କରୁନୁ ?"

ଧନେଶ କହିଲା—ମା' ତାକୁ ମୋ ସାଙ୍ଗରେ ପଠାଇଛନ୍ତି । ମା' କହନ୍ତି—ଏସବୁ ବଡ଼ଘରର ପିଲାମାନେ କରନ୍ତି ନାହିଁ । ଏମାନେ

ସବୁ ଆଉ ଅଛନ୍ତି କାହିଁକି ? ମେହିଆ କାମ କଲେ ଆମ ବଂଶର ମାନ ସମ୍ମାନ ଆଉ ରହିବ ତ ?

ଲୁଲୁ କହିଲା—"ନିଜ କାମ ନିଜେ କଲେ କଅଣ ମେହିଆ ହୋଇଗଲି ? ସାର୍ ପରା ସେଦିନ କହୁଥିଲେ, ଆମ ଦେଶର ଜାତିର ପିତା ମହାତ୍ମାଗାନ୍ଧୀ ନିଜ କାମ ନିଜ ନିଜେ କରୁଥିଲେ ।

ଦିନେଶ ହସିଦେଇ କହିଲା—"ତୁ ଆଜି ମୋତେ ଗାନ୍ଧୀ କରିଦେନା । ସେମିତି ହେଲେ ମୋତେ ପୁଣି ଅଣ୍ଟା ଲୁଗା ଖଦଡ଼ ପିନ୍ଧିବାକୁ ହେବ । ଆନ୍ଦୋଳନ କରିବାକୁ ହେବ ।" —"ତୁ ଥଟ୍ଟା କରୁଛୁ ପିନା, କିନ୍ତୁ ନିଜ କାମ ନିଜେ କଲେ ତୁମର ବଂଶ ମର୍ଯ୍ୟାଦା ଗୁଚିଯିବ ନାହିଁ । ସମ୍ଭ୍ରାନ୍ତ ବଂଶ କହିଲେ ଏହାକୁ ବୁଝାଏ ନାହିଁ । ଗୋପବନ୍ଧୁଙ୍କ କଥା ତ ଶୁଣିଛୁ ! ସେ ନିଜ କାମ ନିଜେ କରୁ ନ ଥିଲେ, ସେ ଅନ୍ୟର କାମ ବି କରୁଥିଲେ ।" ଲୁଲୁ ଉତ୍ତର ଦେଲା ।

ଦିନେଶ ଏଥର ସେହିପରି ଗମ୍ଭୀର ସ୍ୱରରେ କହିଲା—"ମୁଁ ତ ଆଉ ଗୋପବନ୍ଧୁ ନୁହେଁ । ମୁଁ ଜଣେ ସାଧାରଣ ପିଲା । ସେ ତ ଦେବତା ।"

—"ତା'ହେଲେ ତାଙ୍କ ବିଷୟରେ ଆମେ ବହିରେ ପଢୁଛୁ କାହିଁକି ?

—"ପରୀକ୍ଷାରେ ପାଶ୍ କରିବା ପାଇଁ ।"

—"ପାଶ୍ ପରେ କଅଣ କରିବୁ ?"

—"ବାପା କହୁଥିଲେ ବିଜିନେସ୍ କରିବ । ଟଙ୍କା ରୋଜଗାର କରିବ ।"

ଲୁଲୁ ଏଥର ନୀରବ ହୋଇଗଲା । ସେ କହିଲା—ବିଜିନେସ୍ ପାଇଁ ପାଠପଢ଼ା ଦରକାର ନାହିଁ । ଜୀବନ ପାଇଁ ପାଠପଢ଼ା ଦରକାର । ବାପା କହୁଥିଲେ—"ଆମେ ଯାହା ଶିକ୍ଷା କରୁଛୁ, ତାକୁ ନିଜ ଜୀବନରେ ବ୍ୟବହାର କଲେ ଯାଇ ଏ ଦେଶ ସୁନା ପାଲଟିଯିବ ।"

ଘନେଶ କହିଲା—"ଦୁନିଆଁଟା ସୁନା ପାଲଟିଲେ ମୋତେ କଅଣ ମିଳିବ ? ମୁଁ ନିଜେ ସୁନା ପାଲଟିଲେ ହେଲା । ନିଜେ ବଞ୍ଚିଲେ ବାପର ନାଁ—"

—"ଦୁନିଆଁଟା ଧ୍ୱଂସ ହେଲେ—ତୁମେ ଧ୍ୱଂସ ହେବନି ତ ?"

—ଦ୍ଧନେଶ ନୀରବ ରହିଲା ।

***

ରବିବାର । ଛୁଟିଦିନ । ଲୁଲୁ ତାର ସାର୍ଟ, ପେଣ୍ଟ ସବୁ ସାବୁନ ଦେଇ କାଚିବାରେ ଲାଗିଥିଲା । ଏହି ସମୟରେ ଘନେଶ ଯାଇ ପହଞ୍ଚିଗଲା । ତାକୁ ଏମିତି କାମ କରୁଥିବାର ଦେଖି ସେ ପଚାରିଲା —"ଆରେ, ତୁମର କଅଣ କେହି ଚାକର ନାହାନ୍ତି ?

ଲୁଲୁ କହିଲା—"ନା, ଆମେ ଛୁଟିଦିନ ଲୁଗା କାଚି ଇସ୍ତ୍ରୀ ଦେଉ । ତୁମେ ଭାବନା ଯେ ବାପା ପଇସା ଦେଇ ଲୋକ ରଖିପାରୁ ନାହାନ୍ତି; କିନ୍ତୁ ଆମେ ନିଜ କାମ ନିଜେ କରୁଚୁଁ । ନିଜେ କାଚି ପିନ୍ଧିଲେ କେତେ ଆନନ୍ଦ ଲାଗେ, ତୁମେ ବୁଝି ପାରିବ ନାହିଁ ।" ଲୁଲୁ ତାର ଲୁଗା କାଚି ସାରି ଘନେଶ ସହିତ ବୁଲି ବାହାରିଲା ।

***

ତା'ପରଦିନ । ଘନେଶ ଲୁଲୁକୁ ତାଙ୍କ ଘରକୁ ଡାକିଲା ବୁଲିଯିବା ପାଇଁ । ଲୁଲୁ ତା ପଢ଼ାଘରେ ପହଞ୍ଚିଲା । ଦେଖିଲା ଟେବୁଲ ଉପରେ ବହି ଖାତା ସବୁ ଖେଳାମେଳା ହୋଇ ପଡିଛି । ଟେବୁଲ ତଳେ ଟୁକୁରା କାଗଜ ସବୁ ପଡ଼ିଛି ।

ଲୁଲୁ ଘନେଶକୁ କିଛି ନ କହି ବହି, ଖାତା ସଜାଡ଼ିବାକୁ ଲାଗିଲା । ଟେବୁଲ ତଳେ ପଡ଼ିଥିବା କାଗଜକୁ ଝାଡୁରେ ଗୋଟେଇ ନେଇ ଝର୍କାବାଟେ ବାହାରକୁ ପକାଇଦେଲା । ଘନେଶର ବାରଣ ସେ ମାନିଲା ନାହିଁ । ଘନେଶକୁ ଏହା ଭାରି ଖରାପ ଲାଗିଲା । ତା ମୁହଁଟା ଝାଉଁଳି

ପଡିଲା । ସେ ମନେ ମନେ ସ୍ଥିର କଲା—"ନାଃ—ଏବଠୁ ସେ ନିଜ କାମ ନିଜେ କରିବ । କାହାରି ଉପରେ ଭରସା କରିବ ନାହିଁ । ନିଜ କାମ ନିଜେ କଲେ ମାନ ସମ୍ମାନ ଚାଲିଯିବ ନାହିଁ ।"

ଶୁଣାଯାଏ, ସେବଠୁଁ ଘନେଶ୍ ନିଜ ଲୁଗା ନିଜେ କାଚୁଛି । ନିଜ ପଢ଼ାଘର ପରିଷ୍କାର କରୁଛି । ନିଜ ବସ୍ତାନି, ଟିଫିନ୍ କେରି, ପାଣିବୋତଲ ନିଜେ ବୋହୁଛି ।

ସେହି ଦିନଠାରୁ ଲୁଲୁ ଘନେଶ୍‌ର ସବୁଠାରୁ ବଡ଼ ସାଙ୍ଗ ହୋଇ-ଯାଇଛି ।



# ନରଣ ଗଡ଼ର ପାଇକ ବୀର

## ବିଭୂତି ପଟ୍ଟନାୟକ

ଓଡ଼ିଶା ହେଉଛି ବୀର ପାଇକମାନଙ୍କର ଦେଶ । ଜନ୍ମଭୂମିର ଟେକ ରଖିବା ପାଇଁ ଓଡ଼ିଆ ପାଇକ ଯେପରି ଶତ୍ରୁର ଖଣ୍ଡା ଆଗରେ ହସିହସି ନିଜର ବେକ ପତାଇ ଦେଉଥିଲା, ଗରିବ ଲୋକଙ୍କ ଦୁଃଖ ଦେଖିଲେ ତା ହୃଦୟ ମଧ୍ୟ ସେମିତି ତରଳି ଯାଉଥିଲା । ଶତ୍ରୁକୁ ଧ୍ୱଂସ କରିବା ପାଇଁ ତାର ହାତ ଥିଲା ହତିଆର ଭଳି ତୀକ୍ଷ୍ଣ, ହୃଦୟ ଥିଲା ପଥର ଭଳି ଟାଣ; କିନ୍ତୁ ଗରିବର ଦୁଃଖ ଦେଖିଲେ ତାର ମନ ହୋଇ ଯାଉଥିଲା ଓଦା ମାଟିଭଳି ନରମ, ଫୁଲ ଭଳି କୋମଳ ।

ଓଡ଼ିଶାର ଗଜପତି ରାଜାମାନେ ପାଇକମାନଙ୍କ ଲାଗି ଜମି ସବୁ ଖଞ୍ଜା କରି ଦେଇଥିଲେ । ଏଥିପାଇଁ ସେମାନଙ୍କୁ କର ଟିକସ ଦେବାକୁ ପଡ଼ୁ ନ ଥିଲା । ଦେଶରେ ଶାନ୍ତି ବିରାଜୁ ଥିଲାବେଳେ ସେମାନେ ଏହି ଜମିକୁ ଚାଷ କରୁଥିଲେ; କିନ୍ତୁ ଯୁଦ୍ଧ ଡାକରା ଆସିବା ମାତ୍ରେ ହାତୀ, ଘୋଡ଼ାରେ ଚଢ଼ି, ହାତରେ ଖଣ୍ଡା, ଢାଲ ଧରି, ଶିଙ୍ଗା ବଜାଇ ଶତ୍ରୁ ସଂହାରଲାଗି ଯୁଦ୍ଧ କ୍ଷେତ୍ରକୁ ଡେଇଁ ପଡ଼ୁଥିଲେ ।

ଇଂରେଜମାନେ ଏ ଦେଶକୁ ଅଧିକାର କଲାପରେ ପାଇକ-ମାନଙ୍କ ଅବସ୍ଥା ବଦଳି ଗଲା । ଇଂରେଜମାନେ ଓଡ଼ିଆ ପାଇକମାନଙ୍କ ବୀରତ୍ୱ କାହାଣୀ ଯେପରି ଶୁଣିଥିଲେ, ସେମାନଙ୍କ ଦେଶପ୍ରେମ କଥା ମଧ୍ୟ ସେହିପରି ଜାଣିଥିଲେ । ବିଦେଶୀ ଶାସକଙ୍କୁ ବରଖାସ୍ତ କରିବା ପାଇକ-ମାନଙ୍କ ପକ୍ଷରେ ଅପମାନଜନକ କାର୍ଯ୍ୟ ଥିଲା । ତେଣୁ ଓଡ଼ିଆ ପାଇକ-

ମାନଙ୍କ ବଢ଼ପକୁ ଖର୍ବ ନ ଦେଲାପାଏ ଓଡ଼ିଶାକୁ ନିଜ ଦଖଲରେ ରଖିବା ସହଜ ହେବନାହିଁ ବୋଲି ଇଂରେଜମାନେ ଜାଣି ପାରିଥିଲେ ।

ଓଡ଼ିଆ ରାଜାମାନେ ପାଇକମାନଙ୍କୁ ଯେଉଁ ସବୁ ନିଷ୍କର ଜମି ଭୋଗ ଦଖଲ କରିବାକୁ ଦେଇଥିଲେ, ଇଂରେଜମାନେ ସେ ଜମି ଛଡ଼ାଇ ନେଲେ । ଫଳରେ ଓଡ଼ିଆ ପାଇକମାନଙ୍କ ଭିତରେ ଅସନ୍ତୋଷ କୁହୁଳି-ବାକୁ ଲାଗିଲା । ସେମାନେ ଠାଏ ଠାଏ ଇଂରେଜ ଫଉଜ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିଦେଲେ ।

ଏହିଭଳି ଏକ ଇଂରେଜ-ବିରୋଧୀ ବିଦ୍ରୋହର ନେତୃତ୍ୱ ନେଇ-ଥିଲେ ନରଣଗଡ଼ର ଦଳବେହେରା । ପାଇକମାନଙ୍କ ମଧ୍ୟରେ ଥିବା ମୁଖିଆ ଲୋକଙ୍କୁ ଦଳବେହେରା ଉପାଧି ମିଳିଥାଏ; କିନ୍ତୁ ନରଣ ଗଡ଼ର ଦଳବେହେରା କେବଳ ପାଇକମାନଙ୍କ ମଧ୍ୟରେ ମୁଖିଆ ନ ଥିଲେ । ପରୋପକାର ଓ ସ୍ୱାର୍ଥତ୍ୟାଗ ଯୋଗୁଁ ସେ ଅଞ୍ଚଳର ସବୁ ଶ୍ରେଣୀର ଲୋକଙ୍କ ଭିତରେ ସେ ଥିଲେ ମଉଡ଼-ମଣି । ତେଣୁ ସେ ଯେତେବେଳେ ଇଂରେଜ ଫଉଜଙ୍କ ବିରୁଦ୍ଧରେ ଯୁଦ୍ଧ ଡାକରା ଦେଲେ । ତାଙ୍କ ନେତୃତ୍ୱରେ ଲଢ଼େଇ କରୁଥିବା ପାଇକମାନଙ୍କୁ ସାହାଯ୍ୟ କରିବା ପାଇଁ ସବୁ ଶ୍ରେଣୀର ସ୍ୱାଗାସ୍ଥ୍ୟ ଲୋକ ଆଗଭର ହେଲେ । ଇଂରେଜମାନେ ଦଖଲ କରିଥିବା ଅନେକ ଗ୍ରାମ ପାଇକମାନେ ଅଧିକାର କରିଗଲେ । ଇଂରେଜମାନେ ଏହା ଦେଖି ଚିନ୍ତିତ ହୋଇଗଲେ । ଅଧିକ ତୋପ, ବୋମା ବନ୍ଧୁକ ଇତ୍ୟାଦି ଅସ୍ତ୍ରଶସ୍ତ୍ର ଅଣାଇଲେ । ଅଧିକ ସୈନ୍ୟ ଆସି ପହଞ୍ଚିଗଲେ ।

ଇଂରେଜମାନଙ୍କ ବିପୁଳ ସଂଖ୍ୟକ ସୈନ୍ୟବାହିନୀଙ୍କ ପାଖରେ ପାଇକ ବିଦ୍ରୋହ ଟେକିଲା ନାହିଁ । ଅନେକ ଓଡ଼ିଆ ପାଇକ ଯୁଦ୍ଧକ୍ଷେତ୍ରରେ ଲଢ଼େଇ କରି ପ୍ରାଣ ଦେଲେ, ଅନେକ ଇଂରେଜମାନଙ୍କ ହାତରେ ବନ୍ଦୀ-ହେଲେ, କିନ୍ତୁ ନରଣଗଡ଼ର ଦଳବେହେରାଙ୍କ ନେତୃତ୍ୱରେ ଆଉ କିଛି ପାଇକ ଅରଣ୍ୟରେ ଆତ୍ମଗୋପନ କଲେ । ଯେତେ ଚେଷ୍ଟାକଲେ ମଧ୍ୟ ଇଂରେଜ ସୈନ୍ୟମାନେ ତାଙ୍କୁ ଧରି ପାରିଲେ ନାହିଁ ।

ଇଂରେଜମାନଙ୍କ ସୈନ୍ୟ ଶିବିରରେ ଖଳବଳି ପଡ଼ିଲା । ପାଇକମାନଙ୍କ ବିଦ୍ରୋହୀ ନେତା ଦଳବେହେରାଙ୍କୁ ଯିଏ ଧରି ଆଣି ଦେବ, ତାଙ୍କୁ ଏକ ହଜାର ଟଙ୍କା ନଗଦ ପୁରସ୍କାର ଦିଆଯିବ ବୋଲି ବ୍ରିଟିଶ୍ କ୍ୟାପ୍‌ଟେନ ଘୋଷଣା କଲେ । ଏହି ଘୋଷଣା ଗାଁଆଡ଼େ ଢେଣ୍ଡୁରା ଦିଆଯାଇ ପ୍ରଚାର କରାଗଲା । ଟଙ୍କା ଲୋଭରେ ଅନେକ ଗୁପ୍ତଚର ନରଣଗଡ଼ ସାରା ଖେଳିଗଲେ; କିନ୍ତୁ କେହିହେଲେ ଦଳବେହେରାଙ୍କ ସନ୍ଧାନ ଇଂରେଜ ସରକାରଙ୍କୁ ଦେଇପାରିଲେ ନାହିଁ ।

ଦଳବେହେରା ଘନ ଅରଣ୍ୟ ଭିତରେ ଅନ୍ୟ ପାଇକମାନଙ୍କ ସହିତ ଆତ୍ମଗୋପନ କରି ରହିଥାଆନ୍ତି । ଖିଅର ନ ହେବା ଫଳରେ ମୁହଁ ସାରା ଦାଢ଼ି ଭର୍ତ୍ତିହୋଇ ଯାଇଥାଏ । ତାଙ୍କ ଚେହେରା ଏମିତି ବଦଳି ଯାଇଥାଏ ଯେ ସେ ସାଧାରଣ ଲୋକ ତାଙ୍କୁ ଦେଖିଲେ ମଧ୍ୟ ଚିହ୍ନିବା କଷ୍ଟ ।

ଦିନେ ସେ ଜଙ୍ଗଲ ପାଖ ରାସ୍ତାରେ ଏକୁଟିଆ ବୁଲୁଥିଲେ । ଜଣେ ଓଡ଼ିଆ ଲୋକ ସହିତ ଦେଖାହେଲା । ଲୋକଟିର ବେଶ ପୋଷାକ ଦେଖି ମନେହେଲା ସେ ତାଙ୍କଠାରୁ ଆହୁରି ଦୁଃଖୀ ।

ଲୋକଟି ତାଙ୍କ ପାଖକୁ ଆସି ପଚାରିଲା –"ଆଜ୍ଞା ! ନରଣଗଡ଼କୁ ବାଟ କୁଆଡେ ? ମୁଁ ଏ ଜଙ୍ଗଲ ଭିତରେ ବାଟ ଭୁଲି ଗଲିଣି ।"

ନରଣଗଡ଼ ନାମ ଶୁଣି ଦଳବେହେରାଙ୍କ ଆଖି କୋଣରେ ଆନନ୍ଦ ଆଉ ବିସ୍ମୟର ଆଲୁଅ ଝଲସି ଉଠିଲା ।

ସେ ପଚାରିଲେ—"ତମେ ନରଣଗଡ଼କୁ କାହିଁକି ଯାଉଛ ?"

ଗରିବ ଲୋକଟି ଉତ୍ତର ଦେଲା—"ମୁଁ" ନରଣଗଡ଼ର ଦଳବେହେରାଙ୍କୁ ଦେଖା କରିବାକୁ ଯାଉଛି ।"

ଲୋକଟିର ଉତ୍ତର ଶୁଣି ଏଥର ଚମକି ପଡିଲେ ଦଳବେହେରା । ଆବାକ୍ ହୋଇ ପଚାରିଲେ—"ତାଙ୍କ ପାଖରେ ତମର କାମ କଅଣ ?"

ଦୁଃସ୍ଥ ଲୋକଟି ଏଥିରେ ଦୁଃଖରେ ଭାଙ୍ଗି ପଡ଼ି କହିଲା—"ଆଜ୍ଞା ! ମୋର ଭାଗ୍ୟ ଖରାପ । ମୋ ଘର ଗଞ୍ଜାମ । ମୁଁ ନୌକାରେ ସଜଡ଼ା ଲଦି ଚିଲିକାରେ ଯାଉଥିଲି । ହଠାତ୍ ପବନ ବହିଲା । ମୋ ନୌକାଟି ଓଲଟି ପଡ଼ି ଚିଲିକାର ଅକାତକାତ ପାଣିରେ ବୁଡ଼ିଗଲା । ମୁଁ ମାଆ କାଳିଜାଈଙ୍କ ଦୟାରୁ କୌଣସିମତେ ପ୍ରାଣ ବଞ୍ଚାଇ କୂଳରେ ପହଞ୍ଚିଛି । ମୋ ପାଖରେ କାଣିକଉଡ଼ିଟିଏ ନାହିଁ । ଶୁଣିଛି ନରଣଗଡ଼ର ଦଳ-ବେହେରା ଦୟାବନ୍ତ ପୁରୁଷ । ସେ କାହାକୁ ଖାଲି ହାତରେ ଫେରାଇ ଦିଅନ୍ତି ନାହିଁ । ଦେଖାହେଲେ ତାଙ୍କୁ କିଛି ଟଙ୍କା ସାହାଯ୍ୟ ମାଗିବି ।"

କଥା କହିସାରି ଲୋକଟି ଚୁପ ହୋଇଗଲା, କିନ୍ତୁ ଏଣେ ଦଳବେହେରାଙ୍କ ଗୁରୁତର ପଞ୍ଜରା ହାଡ଼ ଦୋହଲାଇ ଏକ ତପ୍ତ ଦୀର୍ଘ ଶ୍ୱାସ ବାହାରି ଆସିଲା । ସେ କିଛି ସମୟ ମୌନବ୍ରତରେ କ'ଣ ଭାବିବାକୁ ଲାଗିଲେ । କ୍ରମଶଃ ତାଙ୍କ ମୁହଁର ମାଂସପେଶୀ ଟାଣ ହୋଇଗଲା । ଆଖିଡୋଳା ଉଜ୍ଜ୍ୱଳ ଦେଖାଗଲା ।

ସେ ଲୋକଟିର ହାତ ଧରି କହିଲେ—"ଚାଲ, ମୁଁ ତୁମକୁ ନରଣଗଡ଼ର ଦଳବେହେରାଙ୍କ ପାଖରେ ପହଞ୍ଚାଇ ଦେବି ।"

କିନ୍ତୁ ନରଣଗଡ଼ ନ ଯାଇ ଦଳବେହେରା ପହଞ୍ଚିଲେ ଖୋର୍ଦ୍ଧାରେ । ସେଠାରେ ଇଂରେଜ ସରକାରଙ୍କ ସୈନ୍ୟ ଶିବିରରେ କ୍ୟାପଟେନ୍ ଅବସ୍ଥାନ କରୁଥାନ୍ତି ।

ଦଳବେହେରା ସେ ଲୋକଟି ସହିତ ଇଂରେଜ କ୍ୟାପ୍‌ଟେନ୍‌ଙ୍କ ପାଖରେ ପହଞ୍ଚି କହିଲେ—ସାହେବ ! ନରଣଗଡ଼ର ଦଳବେହେରାଙ୍କୁ ଧରାଇଦେଲେ ଆପଣ ନଗଦ ଏକ ହଜାର ଟଙ୍କା ଦେବେ ବୋଲି ଘୋଷଣା କରିଥିଲେ । ସତ ନା ?"

ବ୍ରିଟିଶ କ୍ୟାପ୍‌ଟେନ୍ ଦାଢ଼ିଆ ଲୋକଟିର ମୁହଁକୁ ଚାହିଁ ଉତ୍ତର ଦେଲେ—"ହଁ, ନରଣଗଡ଼ର ଦଳବେହେରାଙ୍କୁ ତମେ ଧରାଇ ଦେଇ ପାରିବ ?"

ଦଳବେହେରା ଅବିଚଳିତ ଭାବରେ କହିଲେ—"ହଁ, ସାହେବ ! ମୁଁ ସେଇ ଲୋକ । ନରଣଗଡ଼ର ଦଳବେହେରା । ମୁଁ ଆପେ ଆପେ

ଧରି ଦେଉଛୁ । ମତେ ଧରାଇ ଦେବାପାଇଁ ଯେଉଁ ପୁରସ୍କାର ଘୋଷଣା କରାଯାଇଥିଲା, ସେ ଟଙ୍କାଟା ମୋତେ ନ ଦେଇ ଏ ଦୁଷ୍ଟ ଲୋକକୁ ଦିଆଯାଉ ।”

ତା’ପରେ ଦଳବେହେରା ଲୋକଟି କପରି ପଣ୍ୟଦ୍ରବ୍ୟ ନେଇ ଡଙ୍ଗାରେ ଗଲାବେଳେ ଚଲାକରେ ସର୍ବସ୍ୱ ହରାଇ ତାଙ୍କୁ ଭେଟିଥିଲା, ସେ ସବୁ କଥା ବର୍ଣ୍ଣନା କରିଗଲେ । ସେ ଦୁଷ୍ଟ ଲୋକକୁ ସାହାଯ୍ୟ କରିବା ପାଇଁ ତାଙ୍କ ପାଖରେ କିଛି ନ ଥିବା ହେତୁ ସ୍ୱତଃ କପରି ଧରା-ଦେଉଛନ୍ତି, ତାହା ମଧ୍ୟ ଉଲ୍ଲେଖ କଲେ ।

ଦଳବେହେରାଙ୍କ କଥା ଶୁଣି ବ୍ରିଟିଶ କ୍ୟାପ୍‌ଟେନଙ୍କ ହୃଦୟ ମଧ୍ୟ ତରଳି ଗଲା, ଆଖି ଛଳ ଛଳ ହୋଇଆସିଲା । ସେ ବୁଝିପାରିଲେ, ଓଡ଼ିଆ ପାଇକ କେବଳ ବାହୁବଳରେ ନୁହେଁ, ମନର ବଳରେ ମଧ୍ୟ ମହୀୟାନ୍ । ଏଭଳି ମହତ୍-ପ୍ରାଣ ବ୍ୟକ୍ତିଙ୍କୁ କୌଣସି ବିଦେଶୀ ସରକାର ପରାସ୍ତ କରି-ପାରେ ନାହିଁ ।

ସେ ଖୁବ୍ ମୃଦୁ କଣ୍ଠରେ ଅଭିଭୂତ ଭାବରେ କହିଲେ— “ଦଳବେହେରା ! ତୁମର ବନ୍ଧୁ କେବଳ ଏକ ହଜାର ଟଙ୍କା ପୁରସ୍କାର ପାଇବେ ନାହିଁ, ତମେ ମଧ୍ୟ ମୁକ୍ତି ପାଇବ । ତମ ଆତ୍ମତ୍ୟାଗର ତୁଳନା ନାହିଁ । ତାର ଅର୍ଘ୍ୟ କୌଣସି ପୁରସ୍କାର ନାହିଁ ।”



# ଅଖିଆ ଠାକୁର ପେଟୁଆ ହେଲେ

## ପ୍ରତିଭା ରାୟ

ମା' ପୂଜା କଲାବେଳେ କୁନା ହାତଯୋଡ଼ି ସୁନା ପିଲାଟି ଭଳି ବସିରହେ। ତା'ର ଆଖି କିନ୍ତୁ ଠାକୁରଙ୍କ ପାଖରେ ନ ଥାଏ। ଠାକୁରଙ୍କ ଆଗରେ ପଥର ଥାଳିରେ ବଢ଼ା ହୋଇଥିବା ଭୋଗ ଉପରେ ଥାଏ। ମା' ବହୁତ ସମୟ ଯାଏ ଆଖି ବୁଜି ବସି ଠାକୁରଙ୍କୁ କେତେ କଥାମାଗନ୍ତି।—"ହେ ଠାକୁର, ମୋ କୁନାକୁ ଭଲ ବୁଦ୍ଧି ଦିଅ। ତା ଦେହ ଭଲ ରହୁ। ସେ ସଂସାରରେ ସବୁ ପିଲାଙ୍କୁ ସବୁ କଥାରେ ଟପିଯାଉ। ଆମର ଧନ ସମ୍ପତ୍ତି ମାଡ଼ିଯାଉ, ସୁଖସମ୍ପଦ ଅଜାଡ଼ି ହୋଇପଡୁ। ଇତ୍ୟାଦି ଇତ୍ୟାଦି......।"

କୁନାକୁ ଚିଡ଼ମାଡ଼େ। ଆଗରେ ଥାଳିଏ ସୁଆଦିଆ ଭୋଗ ବାଢ଼ି ଦେଇ ମା' ଏତେବେଳଯାଏ କ'ଣ ପୂଜାକରନ୍ତି? ତା'ର ଭଳି ଠାକୁରଙ୍କ ପାଟିରୁ ତ ଲାଳ ବୋହିବଣି—ଠାକୁରଙ୍କ ମନ ଯାଇ ଥିବ ଭୋଗ ଥାଳିରେ। ସେ ଆଉ ମା'ଙ୍କ ଗୁହାରି ଶୁଣିବେ କୋଉଠୁ? କୁନା ଦେଖେ—କାଇଁକି ଠାକୁର ତ ଭୋଗ ଖାଆନ୍ତି ନାହିଁ। ଫୁଲ ଟିକେ ଭୋଗ ଥାଳିରେ ପକାଇ ଦେଇ ମା' ପାଣି ଟିକେ ଥାଳି ଚାରିପଟେ ବୁଲାଇ ଦିଅନ୍ତି। ବାସ୍, ସେତିକି ପାଇଁ ସେ ଅପେକ୍ଷା କରିଥାଏ। ତା'ପରେ ଥାଳିକ ଯାକ ଭୋଗ କୁନା ଆଗରେ ବାଢ଼ିଦେଇ ମା' କହନ୍ତି—"ପେଟ-ପୂରାଇ ଖାଇ ଦେ—ସୁନାଟା ପରା।"

କୁନାଟା ପିନା ଟକେଳାଟାଏ—ତା'ର କିନ୍ତୁ ବଡ଼ଇ ଆହାର। ଗୋଟାଏ ଦି'ଟା ଭୋଗ ଖାଇଦେଲେ ପେଟ ପୂରିଯାଏ। ମା' କିନ୍ତୁ କୁନକୁ

କଳେଇ ବଳେଇ ଖୁଆନ୍ତି । ନ ଖାଇଲେ ଆଖି ତରାଟି ଧମକାନ୍ତି—କେଡ଼େ ଆଖିଆ ପିଲାଟା ! ସବୁ କଥାକୁ ଟକ ଟକ, ଖାଇଲାବେଳକୁ ନାକଟେକା । ସବୁ ଖାଇବ, ନହେଲେ ତିନି ଦିନ ଖାଡ଼ା ଉପାସ ପକାଇଦେବ, ସେତେବେଳେ ବୁଝିବୁ ଭୋକ କେମିତି ହୁଏ ।"

କୁନା ସାକୁଲେଇ ହୋଇ କହେ—"ମୁଁ ନୁହେଁ ମ ସେଇ ଠାକୁର ହେଉଛନ୍ତି ଅଖିଆ । ଏଡ଼େ ଏଡ଼େ ଆଖିରେ ଭୋଗଥାଳକୁ କଟାସ ଭଳି ଅନାଇଁ ବସିଥାନ୍ତି, ହେଲେ ଗୋଟାଏ ବି ଖାଆନ୍ତି ନାହିଁ । ଭୋକଲଡ଼ୁ, ଶୋଷଲଡ଼ୁ ଖାଇଥିବେ ବୋଧହୁଏ ।"

ମା' କହନ୍ତି—"ନାଇଁରେ, କୁନା ଠାକୁର ମହାନ୍ ପେଟୁ । ଏ ସାରା ସଂସାରରେ ପଶୁପକ୍ଷୀ, କୀଟପତଙ୍ଗ ଯିଏ ଯାହା ଖାଉଛନ୍ତି ସବୁ ଯାଉଛି ଠାକୁରଙ୍କ ପେଟକୁ । ଠାକୁର ସବୁ ସମସ୍ତଙ୍କର ମା' ବାପା । ନିଜ ପିଲାର ପେଟ ପୂରିଲେ ମା' ବାପା ଭୋକ ଉପାସରେ ପଡ଼ିଥିଲେ ବି ତାଙ୍କ ପେଟ ପୂରିଯାଏ । ତୁ ପେଟ ଭରି ଖାଇଦେଲେ ଠାକୁରଙ୍କ ପେଟ ବି ପୂରିଯିବ ଯେ !"

କୁନା ଚିନ୍ତାରେ ପଡ଼ିଯାଏ । ଥରେ ମା'ଙ୍କୁ ପଚାରିଲା—"ପିଲାଙ୍କୁ ଭୋକ ହେଉଥିଲେ ଠାକୁରଙ୍କୁ ବି ଭୋକ ହେଉଥିବ । ସେ ଛଟପଟ ହେଉଥିବେ !"

ମା' କିଛି ଟିକେ ନ ଭାବି କହିଦେଲେ—"ହଁ, ସେଇଆ ନୁହେଁ ଆଉ କ'ଣ ? ସେଇଥିପାଇଁ ପରା କହୁଛି, ବେଶି ବେଶି ଖାଇଦେ । ନହେଲେ ତୋ'ତେ ଭୋକ ହେଲେ ଠାକୁରଙ୍କୁ ବି ଭୋକ ହେବ । ସେ କଷ୍ଟ ପାଇବେ ।"

କୁନା ଧରିନେଲା—ଠାକୁରଙ୍କୁ ଦିନ ରାତି ଭୋକ ହେଉଛି । ସେ ଅହରହ ଛଟପଟ ହେଉଛନ୍ତି, କାରଣ ଏ ଜଗତରେ ଅସଂଖ୍ୟ ପିଲା ଭୋକିଲା । ପେଟ ପୂରାଇ ଦୁଇଓଳି ମୁଠାଏ ଆହାର ପାଉନାହାନ୍ତି । କୁନା ଯେତେ କ୍ଷୀର, ସର, ମିଠେଇ ପେଟ ଫଟେଇ ଖାଇଲେ ବି ଠାକୁରଙ୍କ ପେଟ ପୂରିବ ନାହିଁ । ଗୋଟିଏ ପିଲାର ପୂରିଲା ପେଟ କୋଟିଏ ପିଲାର

ଭୋକଲା ପେଟ ଆଗରେ ଠାକୁରଙ୍କ ଆଖିରେ ପଡ଼ିବ ନାହିଁ । ଠାକୁରଙ୍କ ଭୋକ ମଣିବ ନାହିଁ । ତାଙ୍କ ସାଙ୍ଗରେ ତା'ର ଭଳି କେତେ କୁନି କୁନି ଛୁଆ—ଠାକୁରଙ୍କ ବଗିଚାରେ ସଜଫୁଟା ଫୁଲ ସମସ୍ତେ । ସେମାନେ ଭୋକଲା; କିନ୍ତୁ କୁନାଙ୍କ ଘରେ ନିତି ଠାକୁରଙ୍କ ପାଇଁ ପିଠାପଣା, ଭୋଜଭାତ ।

କୁନା ତା'ର ଭୋକଲା ସାଙ୍ଗମାନଙ୍କୁ ବେଳେବେଳେ ଭୋଗ ଖାଇବା ପାଇଁ ଡାକି ଆଣିଲା । ମା' ଚିଡ଼ିଲେ । କହିଲେ—"ନିତି ଦରିଦ୍ରଙ୍କୁ କିଏ ଦବ ? ସେମାନେ କାମ କରି ଶିଖନ୍ତୁ—ନିଜେ ନିଜେ ପେଟ ପୋଷିବାର ଶକ୍ତି ହାସଲ କରନ୍ତୁ । ଦରିଦ୍ରଙ୍କୁ ପ୍ରତିଦିନ ଦାନ କଲେ ସେମାନେ ଭିକାରି ପାଲଟିଯିବେ, ଅକର୍ମା ପାଲଟିଯିବେ ।"

ଏ କଥାଟା କୁନା ମନକୁ ପାଇଲା । ହେଲେ ପିଲଗୁଡ଼ା ଖାଇପିଇ ହୃଷ୍ଟ ସବଳ ହୋଇ ବଡ଼ ହୋଇଗଲେ ଯିବା ଜବ୍ୱାନ୍ ହେବେ—କିଷାନ ହେବେ, କାରିଗର ହେବେ, ଶିଳ୍ପୀ ହେବେ, ବୈଜ୍ଞାନିକ ହେବେ । ଭାବିଲା—"କେତେ ଖାଇବା ଜିନିଷ ନଷ୍ଟ ହେଉଛି ଓ ସେମାନେ ଖାଇବାକୁ ପାଉନାହାନ୍ତି । ମୋ ଖାଇବା ଜିନିଷକୁ ଏକାଠି ଭାଗ ବାଣ୍ଟି ସେମାନଙ୍କ ସଙ୍ଗେ ଖାଇଲେ ସେମାନେ ତ ବଡ଼ ହୋଇଯାଆନ୍ତେ । ନିଜ ପେଟ ନିଜେ ପୋଷନ୍ତେ—ଦେଶ ପାଇଁ କାମ କରନ୍ତେ । ହେଲେ ମା' କ'ଣ ସେ କଥା ଶୁଣିବେ ?"

କୁନା ଗୋଟାଏ ବୁଦ୍ଧି ପାଞ୍ଚିଲା । ମା' ଆଖି ବୁଜି ଧ୍ୟାନରେ ବସିବାବେଳେ କୁନା ଭୋଗ ଥାଳିକି ଉଠେଇ ନେଇ ଝରକାବାଟେ ବେଳେ ବେଳେ ସାଙ୍ଗ ପିଲଙ୍କୁ ଦେଇଦିଏ । ଖାଲି ଥାଳିଟାକୁ ଠାକୁରଙ୍କ ଆଗରେ ଥୋଇଦେଇ ନିଜେ ଧ୍ୟାନରେ ବସିଯାଏ । ମା' କାବା ହୋଇଯାନ୍ତି । କହନ୍ତି—"ଆରେ ଆରେ, ଭୋଗ ଖାଇଲା କିଏ ?" କୁନା କିଛି ନ ଜାଣିବା ଭଳି କହେ- "ସେଇ ପେଟୁଆ ଠାକୁର ଖାଇଥିବେ । ଦେଖୁନ, ଥାଳିଟା ଏଠୁ ଶୂନ୍ୟେ ଶୂନ୍ୟେ ଯାଇ ଠାକୁରଙ୍କ ସାମ୍ନାରେ କେମିତି ଥୁଆହୋଇଛି ?"

ମା' ଆଖି ଖୋସି ଦିଅନ୍ତି । ତାଙ୍କର ବାଳକ ବୁଝିଯାଏ । ଠାକୁର ଯଦି ସତକୁ ସତ ପ୍ରତିଦିନ ଥାଳିଏ ଲେଖାଁ ଭୋଗ ଆଖି ମିଟ୍‌କାକେ ଚଟ୍ କରିଦେବେ, ସେ ତ ଦେବାଳିଆ ହୋଇଯିବେ ?

ସତକୁ ସତ ଧୀରେ ଧୀରେ ଠାକୁରଙ୍କ ଆଗରେ ଭୋଗର ପରିମାଣ କମି ଯାଇ ଶେଷରେ ଚିନି ଟିକେ, ନ ହେଲେ ଗୁଡ଼ ଟିକକରେ ପହଞ୍ଚିଲା । କୁନା ବୁଝିପାରିଲା ଠାକୁର ଯଦି ସବୁବେଳେ ଭୋଗ ଖାଇ ଦେଉଥାନ୍ତେ, ତେବେ କେବେ ଠାକୁରଙ୍କ ଆଗରେ ଏତେ ସୁଆଦିଆ ଭୋଗ ବାଢ଼ି ଦିଅନ୍ତେ ନାହିଁ; କିନ୍ତୁ ମା' ଯଦି ଠାକୁରଙ୍କୁ ଭୋଗ ଦେବା ବନ୍ଦ କରି ଦିଅନ୍ତି, ତା'ର ସାଙ୍ଗମାନଙ୍କୁ ସେ କ'ଣ ଖାଇବାକୁ ଦେବ ?

କୁନା ଆଜି ଏକ ବୁଦ୍ଧି ପାଞ୍ଚିଲା । ଦିନେ ରାତିରେ ନିଦରେ ଚିଲଚିଲେଇ କାନ୍ଦିଉଠିଲା । ମା' ବାପା ପଚାରିଲେ—"କ'ଣ ହେଲା ? କି ସପନ ଦେଖିଲୁ ?" କୁନା ସକେଇ ସକେଇ କହିଲା—'ଆମ ଠାକୁରଙ୍କୁ ଭାରି ଭୋକ ହେଉଛି । ସେ କାନ୍ଦୁଛନ୍ତି । ତାଙ୍କ ଅନ୍ତନଳିପେଟ ଯାଇ ପିଠିରେ ଲାଗିଛି । ମା' ତାଙ୍କୁ ଆଜି ପେଟପୂରା ଭୋଗ ଦେଉ ନାହାନ୍ତି । ସେ ଆମ ଘର ଛାଡ଼ି ଏଥର ଚାଲିଯିବାକୁ ବସିଲେଣି ।"

ମା' ଡରିଗଲେ । ଯାହା ହେବାର ହେଉ ପଛେ ତା' ଆରଦିନ ଭୋଗ ଥାଳିଏ ବାଢ଼ିଦେଲେ ଠାକୁରଙ୍କ ଆଗରେ । କୁନା ଭୋଗଟିକ ନେଇ ସବୁଦିନ ଭଳି ସାଙ୍ଗପିଲାଙ୍କୁ ଝରକାବାଟେ ଦେଇଦେଲା । ବାପା କିନ୍ତୁ ଘର କୋଣରେ ଲୁଚି ରହିଥିଲେ । କୁନାର ଫିକର ବୁଝିପାରିଲେ । ମାଙ୍କୁ ଡାକପକାଇ କୁନାର କାଣ୍ଡ ଦେଖାଇଲେ । ମା ଆଖି ନାଲି କରି କହିଲେ—"ଏ କ'ଣ ହେଉଛି ?" କୁନା ନିର୍ଭୟରେ ଜବାବ ଦେଲା—"ଠାକୁର ଖାଉଛନ୍ତି ।" ମା' କହିଲେ—"ପ୍ରତିଦିନ ତେବେ ତୋର ଏ କାଣ୍ଡ ? ପୁଣି ମୋ ଆଗରେ ଫାଙ୍କିଲମି କାଢ଼ୁଛୁ ?"

କୁନା ଗେର୍‌ଟୋକ୍ କହିଦେଲା—"ତମେ ତ କହିଛ ନିଜ ପିଲାଙ୍କ ପେଟ ପୂରିଲେ ଠାକୁରଙ୍କ ପେଟ ପୂରେ । କୌଣସି ପିଲା ଭୋକିଲା ରହିଲେ ଠାକୁର କଷ୍ଟ ପାଆନ୍ତି । ଏମାନେ କ'ଣ ଠାକୁରଙ୍କ ପିଲା

ନୁହଁନ୍ତି ?  ଏମାନେ ଭୋକଲା ଥିବା ଯାଏ ଠାକୁର  ଆମ ଘରେ ପେଟପୂରା ଖାଇ କିପରି କ୍ୟରେ ଶୋଇବେ କେମିତି ?  କୋଟିଏ ପିଲାଙ୍କ ଭୋକିଲା ପେଟ ଆଗରେ  ଗୋଟିଏ  ପିଲାର  ପୂରିଲା ପେଟ  ଠାକୁରଙ୍କ  ଆଖିରେ  ଢ଼ିଙ୍ଗ ନାହିଁ ?"

ମା'ଙ୍କ ମୁହଁ ଲଜ୍ଜାରେ ଏତେ ଟିକେ ହୋଇଗଲା ।  ସେ  ନିଜର ଭୁଲ୍ ବୁଝିପାରିଲେ । ଜାତି, ଧର୍ମ ଭେଦାଭେଦ ଭୁଲି ସାଇର ସବୁ ପିଲାଙ୍କୁ ଠାକୁର ଘରେ  କୁନା  ସଙ୍ଗରେ  ଧାଡ଼ି  କରି  ବସାଇ ଥାଳିକପାଳ ଭୋଗ ସମସ୍ତଙ୍କୁ ସମାନ କରି ବାଣ୍ଟିଦେଲେ ।  ସେମାନଙ୍କୁ  କହିଲେ—"ଠାକୁର ଆଗରେ ପ୍ରତିଜ୍ଞା କର, ପେଟପୂରା ଖାଇ  ଅକର୍ମା ହେବନି ।  ପର ହାତକୁ ଚାହିଁ ରହିବନି ।  ନିଜ ଶକ୍ତି ଜଗେଇ ରେଗ, ଭୋକ ବିରୁଦ୍ଧରେ ଲଢ଼ିବ । ଦେଶରେ  ସୁନା  ପୁଅ ହେବ ।  ତା'ହେଲେ  ସବୁଦିନ  ଭୋଗ ଖାଇବାକୁ ଦେବି ।  ନ  ହେଲେ  ତମେ  ଉପାସ—ତମ  ପେଟୂଆ  ଠାକୁର  ବି ଉପାସ ।"

ସମସ୍ତେ ଏକ ସ୍ୱରରେ 'ହଁ' କହିଲେ ।

ସାଙ୍ଗପିଲାମାନେ ଖୁସିରେ ଭୋଗ ଖାଉଥିବାର ଦୃଶ୍ୟ ଦେଖୁ  ଦେଖୁ କୁନାକୁ  ଦିଶୁଥାଏ ଯେମିତି ସାଙ୍ଗ ପିଲାମାନଙ୍କର ସହସ୍ର  ହାତରେ  ଅଖିଆ ଠାକୁର ଭୋଗସବୁ ଖାଇ ଖାଇ ତାଙ୍କର ଅନ୍ତଲା ପେଟ  ବେଲୁନ୍  ଭଳି ଫୁଲି ଫୁଲି ସେ ପେଟୂଆ ଠାକୁର ହୋଇ ଯାଇଛନ୍ତି ।  ବାପା କୁନାର ପିଠି ଥାପୁଡ଼େଇ ଆନନ୍ଦରେ କହିଲେ—"ତୁ ଆମକୁ ଶିକ୍ଷା ଦେଲୁ ଯେ  ଅନ୍ୟକୁ ସୁଖ ଦେଲେ ନିଜକୁ ସୁଖ ମିଳେ ।  ନିଜ ଜୀବନ  ଧନ୍ୟ ହୁଏ ।"

କୁନା ଦେଖିଲା ତା' ସାଙ୍ଗ ପିଲାଙ୍କ ଓଠରେ  ଠାକୁର  ମୁରୁକିହସା ଦେଉଛନ୍ତି ।  କୁନାର  ନାଲି  ନାଲି  ଓଠରୁ  ହସର ପାଖୁଡ଼ା ଝରି ପଡ଼ିଲା ଠାକୁରଙ୍କ ପାଦତଳେ ।

